୰ ଶିଶୁଦାସଙ୍କ ବିରଚିତ

# କଳି ଭାଗବତ



୰ ଶିଶୁ ଦାସଙ୍କ ବିରଚିତ

# କଳି ଭାଗବତ

ସଂଗୃହୀତ : ୰ କୃଷ୍ଣଚନ୍ଦ୍ର ସାହୁ

ବାଖରାବାଦ, କଟକ-୨

ନୂତନ ମୁଦ୍ରଣ : ୨୦୦୬




ପ୍ରକାଶକ ଓ ପ୍ରାପ୍ତିସ୍ଥାନ :

## ଧର୍ମଗ୍ରନ୍ଥ ଷ୍ଟୋର

ପରିଚାଳକ : ଶ୍ରୀ ବିଦ୍ୟାଧର ସାହୁ

ଅଲିଶାବଜାର, କଟକ-୨, ଫୋନ: ୨୬୦୮୨୯୬

ମୂଲ୍ୟ : ଦଶ ଟଙ୍କା ମାତ୍ର

# କଳି ଭାଗବତ

## ପ୍ରଥମ ଅଧ୍ୟାୟ

ଶୁଣ ସୁଜନେ ଦେଇ ଚିତ୍ତ । ଏ ଯେ କଳକୀ ଭାଗବତ ॥
ସଂସାର ଜନହିତେ ପୁଣ । ବୋଲନ୍ତିଦେବ ନାରାୟଣ ॥
ମୁଁ ମୂଢ଼ ହୀନ ଶିଶୁ ଦାସ । ନାହିଁ ମୋ ଭକତି ବିଶ୍ୱାସ ॥
ଏ କଳିଯୁଗରେ ତ ମୁହିଁ । ଶୂଦ୍ରର ଘରେ ଜାତ ହୋଇ ॥
ଏପରି କିଛିଦିନ ଗଲା । ଶ୍ରୀମୁଖେ ଆଜ୍ଞା ନ ହୋଇଲା ॥
କଳିଯୁଗରେ ଅବତାର । ଶ୍ରୀହରି ଜନ୍ମ ଖେଳଘର ॥
କହଇ ହୀନ ଶିଶୁ ଦାସ । ପୁରାଣ ଶୁଣ ମହାରସ ॥
ଶ୍ରୀକୃଷ୍ଣ ଦ୍ୱାରକା ଭୁବନ । ଆନନ୍ଦେ ଖେଳୁ ନାରାୟଣ ॥
ରୁକ୍ମିଣୀ ଘେନି ଭାବଗ୍ରାହୀ । ବୋଲନ୍ତି ଗଦ ଗଦ ହୋଇ ॥

### ଶ୍ରୀ ଭଗବାନୋବାଚ

ଶୁଣ ରୁକ୍ମିଣୀ ଦିବ୍ୟବାଣୀ । ଏ ଭାବ ତେଜିବା ମିତଣୀ ॥
ଯାଦବ ସଂହାରିଣ ଯିବା । ବଉଦ୍ଧ ରୂପରେ ବସିବା ॥
ଯୁଗ ହୋଇଲା ଆସି ଶେଷ । ଏ ରୂପ ତେଜିବା ଅବଶ୍ୟ ॥
ଆମ୍ଭର ବୋଲ ତୁମ୍ଭେ କର । ସମସ୍ତେ ହୁଅ ଗୋ ବାହାର ॥
ନିଶ୍ଚୟ କହୁଛୁଁ ସଙ୍ଗାତ । କଳି ହୋଇଲା ଉପଗତ ॥
ଶ୍ରୀକୃଷ୍ଣ ମୁଖୁ ଶୁଣି ବାମା । ବୋଇଲେ ଭୀଷ୍ମଙ୍କର ଛେମା ॥

### ରୁକ୍ମିଣୀ ଉବାଚ

କହ ଗୋକୁଳ ଯଦୁନାଥ । କଳିଯୁଗର ଆଦି ତତ୍ତ୍ୱ ॥
କେମନ୍ତ ବିହରିବା କାହିଁ । ପାପ ତ କାହୁଁ ନ ସରଇ ॥

### ଶ୍ରୀ ଭଗବାନୋବାଚ

ଶ୍ରୀକୃଷ୍ଣ ବୋଲନ୍ତି ଗୋ ଶୁଣ । ମୋ ଦେହ ଉଦ୍ଧବ ରୂପେଣ ॥
ନୀଳ ମାଧବ ରୂପେ ଅଙ୍ଗ । ତହିଁ ଉତ୍ତାରେ ଦାରୁ ଯୋଗ ॥
ମିଥ୍ୟାରେ ତତ୍ପର ହୋଇବେ । ଅତ୍ୟାଚାରରେ ଦିନ ନେବେ ॥

ଏମନ୍ତେ ମହା ଘୋର କଳି । ନିରତେ ହେଉଥିବେ ମେଳି ॥
ଯହିଁକି ମୋର ଭୟ ହୋଇ । ଦେଉଳେ ରହିବି ନ ଖାଇ ॥

## ରୁକ୍ମିଣୀ ଉବାଚ

ରୁକ୍ମିଣୀ ବୋଲନ୍ତି ଭୋନାଥ । ଶୁଣି ମୁଁ ହୋଇଲି ଚକିତ ॥
ଯେ ଜନ ଦୁଷ୍ଟ ପଣେ ଥିବ । ସେ କି ପ୍ରକାରେ ମୁକ୍ତ ହେବ ॥

## ଶ୍ରୀବାସୁଦେବୋବାଚ

ଶୁଣ ରୁକ୍ମିଣୀ ଦିବ୍ୟ ତତ୍ତ୍ୱ । ତୋ ଆଗେ କହୁଅଛୁ ସତ୍ୟ ॥
ପ୍ରଥମେ କଳି ଯୁଗରେହିଁ । ମୋ ରୂପ ଥିବ ସର୍ବଠାଇଁ ॥
ସ୍ୱହସ୍ତେ ଚାରିଶ ବରଷ । ତହିଁ ଦେଖିବ ଦିବ୍ୟ ରସ ॥
ଦକ୍ଷିଣ ତଟେ ନୀଳଗିରି । ଗୁଣ୍ଡିଚା ଯାତ୍ରା ତହିଁ କରି ॥
ଇନ୍ଦ୍ରଦ୍ୟୁମନ ନରପତି । ସେ ଅଟେ ଆମ୍ଭ ପଣନାତି ॥
ମର୍ତ୍ତ୍ୟମଣ୍ଡଳେ ରାଜା ହୋଇ । ସେ ମୋତେ ଲୋଡ଼ିବ ଗୋ ସହୀ ॥
ଅନବରତ ଚିତ୍ତ ତାର । ଖୋଜିବ ହୋଇ ତତପର ॥
ସେ ରାଜା ବ୍ରତ କରିଥିବ । ମୋ ଅଦର୍ଶନେ ପ୍ରାଣ ନେବ ॥
ଅନ୍ନ ନ ଖାଇ ଚିତ୍ତେ ଗୁଣି । ମୋତେ ଉଦ୍ଧାର ଚକ୍ରପାଣି ॥
ବୋଲିଣ ଭାବୁଥିବ ମନେ । ରାତ୍ରରେ ଦେଖିବ ସ୍ୱପନେ ॥
ତାହାକୁ ପ୍ରସନ୍ନ ହୋଇବୁ । ଶ୍ରୀମୁଖେ ବଚନ କହିବୁ ॥
ଚେତି ଉଠିଣ ନରପତି । ଦେଖିବ ବିଜେ ଜଗଜ୍ୟୋତି ॥
ତାହାର ମନ ଆମ୍ଭେ ଜାଣି । ତାହାକୁ କହିବୁ ମିତଣି ॥
ବୋଲିବୁଁ ଶୁଣ ହେ ରାଜନ । ଚୌଦିଗେ ଦେଖ ନାରାୟଣ ॥
ଏମନ୍ତ ଭାବେ ତାକୁ କହି । ମାୟାରେ ଭ୍ରାନ୍ତ କରିବଇଁ ॥
ଶୁଣ ରୁକ୍ମିଣୀ ଆମ୍ଭ ବାଣୀ । ଏ ଖେଳ ଭାଙ୍ଗିବ ମିତଣି ॥

## ରୁକ୍ମିଣୀ ଉବାଚ

ବୋଲନ୍ତି ଭୀଷ୍ମକ ନନ୍ଦିନୀ । ଆମ୍ଭେ ତୁମ୍ଭର ଭୃତ୍ୟ ସ୍ୱାମୀ ॥
କଳିଯୁଗରେ କେଉଁ ରୂପ । କି ରୂପେ ହୋଇଥିବ ଗୋପ୍ୟ ॥

## ଶ୍ରୀ ବାସୁଦେବୋବାଚ

କହନ୍ତି ପ୍ରଭୁ ଦଇତାରି । ଶୁଣ ଗୋ ପ୍ରାଣ ମନୋହାରୀ ॥
ସେ ରାଜା ନାମ ଇନ୍ଦ୍ରଦ୍ୟୁମ୍ନ । ସେ ମୋତେ କରିବ ଭଜନ ॥
ନିରତେ ଚିତ୍ତ ତା ଆକୁଳ । ମୋ ନାମ ଅଗ୍ରେ କରି ଠୁଳ ॥
ବ୍ରାହ୍ମଣ ସଂଖ୍ୟା ପଣ୍ଡା ତହିଁ । ଅନନ୍ତ ଦ୍ୱିଜ ବାଜ ପେୟୀ ॥
ସର୍ବଦା ରାଜାର ଛାମୁରେ । ଖଟିଣ ଥିବେ ସ୍ନେହଭରେ ॥
ପ୍ରଦ୍ୟୁମ୍ନ ଷୋଳ ସେନାପତି । କୃଷ୍ଣ ଦୁହିତା ପଣନାତି ॥
ନାରଦ ଅଷ୍ଟ ଋଷିମେଳେ । ରାଜା ଖଟିବେ ସର୍ବ ଠୁଳେ ॥
ଈଶାନେ କୋଶଳ ନୃପତି । ଭୂପାଳେ କାଶୀ ଯଦୁପତି ॥
ନରେନ୍ଦ୍ର ଆଦି ବେଲାଓଳ । ଏ ଆଦି ଭୂପାଳ ଗୋପାଳ ॥
ସମସ୍ତ ରାଜାଗଣ ମିଳି । ସଭା ମହିମା କେବା କଳି ॥
ନାରଦ ଥିଲେ ବୀଣାଧରି । ରାଜାଙ୍କୁ ବଚନ ପଚାରି ॥
କିମ୍ପା ଭାଳୁଛୁ ନୃପନାଥ । ମୋରେ ତ ନ କହ ତୋ ତତ୍ତ୍ୱ ॥
ନାରଦ ମୁଖୁଁ ଏହ ଶୁଣି । ସଧୀରେ କହେ ନୃପମଣି ॥
ଶୁଣ ସୂଚିଓେ ମୁନିବର । ବିଷ୍ଣୁ ବଉଦ୍ଧ ଅବତାର ॥
ନବାବତାର ହେ ମହର୍ଷି । ଦେଖି ମୁଁ ଲଭିବି ମୁକତି ॥
ବିଷ୍ଣୁଙ୍କୁ ନ ଦେଖିଲେ ମୁହିଁ । ମରିବି ଅନଳରେ ଡେଇଁ ॥
ସେ ପ୍ରଭୁ ପଞ୍ଚପ୍ରାଣ ପତି । ଯଦ୍ୟପି ନ ଘେନିବେ ଭକ୍ତି ॥
ହୋଇବେ ଯେବେ ଉପଗତ । ସଂସାର ଜନେ ହେବେ ମୁକ୍ତ ॥
ଏତେକ କହି ରାଜା ତୁନି । ପୁଣି କହନ୍ତି ବ୍ରହ୍ମ ମୁନି ॥
ତୁ ଏବେ ଶୁଣ ନରନାଥ । ଆମ୍ଭେ କହିବା ତାର ଅର୍ଥ ॥
ଚାରି ଦିଗକୁ ପେଷ ଦୂତ । ଖୋଜନ୍ତୁ ଦେବ ଜଗନ୍ନାଥ ॥
ଏବେ ହୋ ଶୁଣ ନୃପରାଣ । ମୋ ତହୁଁ ଜ୍ଞାନ ତତ୍ତ୍ୱ ଶୁଣ ॥
ଶ୍ରୀହରି ଯାଦବ ମରାଇ । ଆପଣେ ଦୋଳିରେ ଖେଳଇ ॥
ପୂର୍ବରେ ମାଧବୀ କାନନ । ଲୁଚିଣ ଥିଲେ ଭଗବାନ ॥

ଜାରା ଶବର ସେ ବେଳର । ମୃଗୟା କରେ ନିରନ୍ତର ॥
ହରିଙ୍କୁ ମାରିତେ ଲୋକିଇ । ପିତାର ପୂର୍ବ ଗୁଣ ବହି ॥
ଯେ ଯାହା କରିଥାଏ ପୁଣ । ସେ ଭୁଞ୍ଜେ ଏ ଚର୍ମ ଦେହେଣ ॥
ଦୋଳିରେ ଖେଳୁଥିଲେ ହରି । କୋମଳ ପାଦ ଦିଶେ ବାରି ॥
ମୃଗରକର୍ଣ୍ଣ ପ୍ରାୟେ ଯହୁଁ । ବାଣ ପ୍ରହାର କଲା ତହୁଁ ॥
ଶସ୍ତ୍ର ଆଘାତେ ହରି ହତ । ଆକୁଳେ ସୁମରିଲା ପାର୍ଥ ॥
ଆସି ମିଳିଲେ ଚାରିଭାଇ । ସମୁଦ୍ରେ ମେଲି ଭାବଗ୍ରାହୀ ॥
ରାଜନ ଶୁଣ ମୋ ବଚନ । ଏ କଥା ପୂର୍ବର ଭିଆଣ ॥
ତୁ ଯେବେ ଦୂତ୍ ବ୍ରଗିବୁ । ବିଷ୍ଣୁଙ୍କୁ ଲୋଡ଼ିଲେ ପାଇବୁ ॥
ଏମନ୍ତ କହି ମୁନି ଗଲେ । ମନ୍ତ୍ରୀ ସେ ରାଜାଙ୍କୁ କହିଲେ ॥
ଚାରି ଦିଗକୁ ଦୂତ ବର । ବେଗେ ଚଳନ୍ତି ଦ୍ୱିଜବର ॥
ବ୍ରାହ୍ମଣମାନଙ୍କୁ ରାଇଲେ । ବିଷ୍ଣୁଙ୍କୁ ଖୋଜ ହୋ ବୋଇଲେ ॥
ସମସ୍ତେ ହରିଧ୍ୱନି କଲେ । ବ୍ରାହ୍ମଣମାନେ ଚଳିଗଲେ ॥
ଦକ୍ଷିଣ ଦିଗ ଗଲେ ଦୂତ । ଉତ୍ତର ପଶ୍ଚିମ ସହିତ ॥
ପୂର୍ବକୁ ବସୁ ଦ୍ୱିଜବର । ରଥ ଚଢ଼ିଣ ଗଲେ ଦୂର ॥
ଚାରୋଟି ଅଶ୍ୱକୁ ଯୋଚିଣ । ଆନନ୍ଦେ ଚଳିଲେ ବ୍ରାହ୍ମଣ ॥
ବୋଇଲେ ଧନ୍ୟ ମୋ ଜୀବନ । ଦେଖିବି ପ୍ରଭୁ ଭଗବାନ ॥
ଶୁଣ ରୁକ୍ମିଣୀ ମନ ଦେଇ । ଏମନ୍ତ ଗଲେ ରଥ ବାହି ॥
ଶ୍ରୀ ଭଗବାନ ଏ ପୁରାଣ । ଶୁଣି ପବିତ୍ର କର ପ୍ରାଣ ॥
କୃଷ୍ଣ ଚରଣେ କରି ଆଶ । ଭଣଇ ଦୀନ ଶିଶୁ ଦାସ ॥

ଇତି ଶ୍ରୀ କଲ୍କୀ ଭାଗବତେ ମହାପୁରାଣେ
ଶ୍ରୀ ବାସୁଦେବ ରୁକ୍ମିଣୀ ସମ୍ବାଦେ ନାମ ପ୍ରଥମୋଽଧ୍ୟାୟଃ ।

# ଦ୍ୱିତୀୟ ଅଧ୍ୟାୟ

## ଭଗବାନୋବାଚ

ବୋଲନ୍ତି ପ୍ରଭୁ ଭଗବାନ । ଶୁଣ ରୁକ୍ମିଣୀ ଦେଇ ମନ ॥
ଚଳଇ ଅରଣ୍ୟ ଭିତର । ବ୍ରାହ୍ମଣ ବସୁ ତତପର ॥
ମନରେ ଦୃଢ଼େ ଅଛି ଧରି । ନୀର ସେ ଆହାର ନ କରି ॥
ବୋଲନ୍ତି ପ୍ରଭୁ ଜଗନ୍ନାଥ । ବିପ୍ର ହୋଇଲା କୃତ୍ୟ କୃତ୍ୟ ॥
ଏମନ୍ତ ବୋଲି ଧ୍ୟାନ କରେ । ଲୋଚନ ଦୃଷ୍ଟିର ଗୋଚରେ ॥
ନାଚଇ ଆନନ୍ଦିତ ଚିତ୍ତେ । ଧ୍ୟାନରେ ହୋଇ ତଦଗତେ ॥
ଗଙ୍ଗା ଆସଇ ବେଗ ହୋଇ । ଯମୁନା ସହିତ ମିଳଇ ॥
ଦେଖିଲେ ତ୍ରିବେଣୀର ଧାର । ଦିଶଇ ମହା ଭୟଙ୍କର ॥
ଘାଟେ ଘାଟିଆ ତହିଁ ଥିଲା । ସେ ଆସି ଆଗେ ଓଗାଳିଲା ॥
ବୋଲଇ କାହିଁ ତୋର ଘର । ଦ୍ରବ୍ୟ ଚୋରାଇ ନେବୁ ମୋର ॥
ଏମନ୍ତ ବୋଲି ଓଗାଳିଲା । ଦେଖିଣ ବିପ୍ର ଭୟ କଲା ॥
ବ୍ରାହ୍ମଣ ବୋଲଇ ବଚନ । ଅଟଇ ମୁହିଁ ଦୂତ ଜନ ॥
ତୁ ମୋତେ ନ କର ଜଞ୍ଜାଳ । ମୋହର ବନ୍ଧୁ ଆଦିମୂଳ ॥
ଏମନ୍ତ ବୋଇଲା ସେ ଯହୁଁ । ଆମ୍ଭେ ବିଜୟ କଲୁ ତହୁଁ ॥
ତ୍ରିବେଣୀ ଘାଟେ ଜଗିଥିଲା । ସାଗରେ ଘାଟିଆ ହୋଇଲା ॥
ସେ ଥିଲା ରାଜାଙ୍କର ପୁଅ । ପୂର୍ବର ଶାପେ ପଡ଼ି ମୋହ ॥

## ଶ୍ରୀ ରୁକ୍ମିଣୀ ଉବାଚ

ରୁକ୍ମିଣୀ ବୋଇଲେ ଗୋସାଇଁ । ବିଷମ ସନ୍ଧି ଏ ଅଟଇ ॥
ସେ ପୁଣି ଭଲ କୁଳେ ଜାତ । କିମ୍ପାଇଁ ହୋଇଲା ଏମନ୍ତ ॥

## ଶ୍ରୀ ଭଗବାନୋବାଚ

ଶ୍ରୀହରି ବୋଲନ୍ତି ଗୋ ଶୁଣ । ତାହାର ପୂର୍ବ ପାପ ଗୁଣ ॥
ରାଜାର ପୁତ୍ର ହୋଇଥିଲା । ଦିନେ ସେ ମୃଗୟାକୁ ଗଲା ॥

ଯାଆନ୍ତେ ଦେଖିଲା ଇନ୍ଦୁର । ପଡ଼ିଛି ବାଲିର ଉପର ॥
ଗର୍ବରେ ବାଡ଼ିଏ ପିଟିଲା । ତାହାର ପ୍ରାଣ ବିସର୍ଜିଲା ॥
ଇନ୍ଦୁର ବୋଇଲାକ ତହିଁ । ମୋ ଶାପ ଘେନ ବେଗ ତୁହି ॥
କଳିଯୁଗର ମଧ୍ୟେ ଥିବୁ । ତ୍ରିବେଣୀ ଘାଟ ତୁ ଜଗିବୁ ॥
ମଦ ମାଆଁସ ଭୋଗ ତୋର । ପଛେ ଭୁଞ୍ଜିବୁ ନର୍କସାର ॥
ଏମନ୍ତ ବୋଇଲା ସେ ଯହୁଁ । କୁମାର ଭୟକଲା ତହୁଁ ॥
ଅନେକ ମତେ ନରପତି । ଇନ୍ଦୁରେ ଚାହିଁ କରେ ସ୍ତୁତି ॥
ମୋହର ଅପ୍ରାଧ ନ ଧର । ବାରେହେଁ ଅନୁଗ୍ରହ କର ॥
ଏ ମୋର ହୀନ ବୁଦ୍ଧି ପୁଣି । ମୁଁ ତୋତେ ମାରିଲି ନ ଜାଣି ॥
ଏମନ୍ତ ବୋଇଲା ସେ ଯହୁଁ । ଇନ୍ଦୁର ମନେ ତୋଷ ତହୁଁ ॥
ଏବେ ହୋ ଶୁଣ ନୃପବର । ଥାଅ ତୁ ତ୍ରିବେଣୀ ଘାଟର ॥
କଳିଯୁଗରେ ନୃପମଣି । ବିଷ୍ଣୁଙ୍କୁ ଖୋଜିବ ସେ ପୁଣି ॥
ରାଜାର ଦୂତ ବସୁ ପଣ୍ଡା । ବିଦ୍ୟାରେ ଅତୀବ ପ୍ରଚଣ୍ଡା ॥
ତାହାଙ୍କୁ ଓଗାଳିକୁ ଯାଇ । ମୁଷ୍ଟି ଏ ମାଗିବୁ ଉଞ୍ଚାଇ ॥
ସେ ତହୁଁ ହରି ସୁମରିବ । ହରି ତୋ ଅପ୍ରାଧ ଖଣ୍ଡିବ ॥
ତୁ ଯିବୁ ନିଜ ଦେହ ପାଇ । ଶୁଣ ରୁକ୍ମିଣୀ ମନ ଦେଇ ॥
ସେ ବିପ୍ର ଆତଙ୍କେ ଡାକିଲା । ରଖ ହେ ଗୋବିନ୍ଦ ବୋଇଲା ॥
ତ୍ରିବେଣୀ ଗଙ୍ଗାକୂଳେ ଯାଇ । ଆମ୍ଭେ ପ୍ରସନ୍ନ ହେଲୁ ତହିଁ ॥
ଦୁଷ୍ଟକୁ ଚକ୍ରରେ ଛେଦିଲୁ । ବିପ୍ରକୁ ପଥ କଢ଼ାଇଲୁ ॥
ଶୁଣ ରୁକ୍ମିଣୀ ଏକଚିତ୍ତେ । ଅମୃତ ଗୀତ ତହୁଁ ତୋତେ ॥
ବିପ୍ର ଆନନ୍ଦ ଚିତ୍ତ ହୋଇ । ସଧୀରେ ଗଲା ରଥ ବାହି ॥
ମିଳିଲା ଗୋମତୀ ଠାବରେ । ଗଙ୍ଗାର ଆଦି ଜନ୍ମ ପୁରେ ॥
ଗୋମତୀ ସ୍ନାହାନ ସାରିଲା । ମୋ ନାମ ଉଚ୍ଚାରଣ କଲା ॥
ଆନନ୍ଦ ଭାବେ ଭୋଳ ହୋଇ । ନୟନୁ ଲୋତକ ବହଇ ॥
ଏମନ୍ତେ ଶାରଦା ଶବର । ଆସିଣ ମିଳିଲା ସେଠାର ॥

ମୋ ନାମ ଉଚ୍ଚାରଣ କଲା । ଭାବରେ ଶ୍ରୀହରି ସ୍ମରିଲା ॥
ଆନନ୍ଦ ଭାବେ ଭୋଳ ହୋଇବା । ନାଚଇ ଉନମତ୍ତ ହୋଇ ॥
ଶାରଦା ବିଚାରେ ମନର । ଦୂରୁ ଦେଖିଲା ରଘୁବର ॥
ମୋ ରାଜ୍ୟ ଯାଉଅଛି ଡେଇଁ । ଏମନ୍ତ ବୋଲି ବୀର ଧାଇଁ ॥
ଧରିଛି ଲୌହ ଧନୁ କରେ । ପଥକୁ ନିରୋଧେ ଆଗରେ ॥
ରେ ରେ ଶବଦେ ଡାକ ଦେଲା । ନାରାଚ଼ ଗୁଣେ ବସାଇଲା ॥
ବିନ୍ଧିଲା ଅତି କୋପ କରି । ରଥେ ବାଜିଲା ସସ୍ର ଚାରି ॥
ବ୍ରାହ୍ମଣ କରୁଥିଲା ଜପ । କିରାତ ବେଢ଼ିଲେ ଅସଂଖ୍ୟ ॥
କେ ବୋଲେ ଏକା ଜଣେ ଏହି । ଏହାକୁ ନ ମାର ହୋ କହି ॥
ଶୁଣି ଶାରଦା କାନ୍ଦ କାନ୍ଦ । ପଚାରି ଆସ ଭଲ ମନ୍ଦ ॥
ବିପ୍ରର ଆଗରେ ମିଳନ୍ତି । ସଧୀରେ ବଚ଼ନ କହନ୍ତି ॥
କି କାର୍ଯ୍ୟେ ପଶିଲ ଏ ବନ । କାହୁଁ ତୁ ଅଇଲୁ ବ୍ରାହ୍ମଣ ॥
ସେ ବିପ୍ର ଡରେ ଥରହର । ଭିକ୍ଷୁକ ମୁହିଁ ଦ୍ୱିଜବର ॥
ଯାଉଛି କୃଷ୍ଣ ଆଣିବାକୁ । ନୃପତି ପେଶିଛି ଆମ୍ଭଙ୍କୁ ॥
ତୁମ୍ଭେ ତ ମହତ ପୁରୁଷ । କିମ୍ପାଇଁ ମୋତେ କର ରୋଷ ॥
ମୋହର ଅନ୍ନ ବସ୍ତ୍ର ନାହିଁ । ଏ ଦେଶେ ଅଇଲଇଁ ମୁହିଁ ॥
କିମ୍ପାଇଁ ଦୁଷ୍ଟବୁଦ୍ଧି କର । ନାରାଚ ବିନ୍ଧ ମୋ ଉପର ॥
ଶାରଦା ବୋଲଇ ଗୋସାଇଁ । ଆମ୍ଭର କିଛି ଜ୍ଞାନ ନାହିଁ ॥
ବନରେ ଥାଉ ଘର କରି । ବନର ଜୀବ ଖାଉ ମାରି ॥
ତୁମ୍ଭେ ତ ଶ୍ରୀହରିର ଦାସ । ନୋହିଲେ ଆଜ ଯାନ୍ତ ନାଶ ॥
ସେ ହରି ଜଗତ କରତା । ଆମ୍ଭଙ୍କୁ କହୁଛନ୍ତି କଥା ॥
ଦ୍ୱାରକା ଯାଦବ ମରାଇ । ଏ ବାଟେ ଗଲାକ ପଳାଇ ॥
ସେ ପ୍ରଭୁ ଗମନର ବେଳେ । ଏମନ୍ତ ଆଜ୍ଞା ଦେଇ ଗଲେ ॥
ଯେ ଅବା ଆମ୍ଭଙ୍କୁ ଲୋଡ଼ିବ । ଏ ବାଟ ଦେଖାଇଣ ଦେବ ॥
ଆମ୍ଭଙ୍କୁ କହି ନାରାୟଣ । ଏ ପଥେ ଗଲେ ସେ ଚଳିଣ ॥

ଏମନ୍ତ ଶବର ବଚନେ । ବ୍ରାହ୍ମଣ ବିଚାରଇ ମନେ ॥
ସଙ୍ଗତେ କେହି ନାହିଁ ମୋର । କେମନ୍ତେ ଗମିବି ବନର ॥
ଏମନ୍ତ ବିଚାରିଣ ମନେ । ରଥରେ ବସିଲା ବହନେ ॥
ବିପ୍ରର ରଥ ତଳେ ଧୀରେ । ମିଳିଲା ପଦ୍ମହ୍ରଦ ତୀରେ ॥
ଗୋବିନ୍ଦ ନାମ ସୁମରଇ । ଉପବାସରେ ଅଛି ରହି ॥
ତାହାର ମନ ଜାଣିବାକୁ । କୃଷ୍ଣଙ୍କୁ ପେଷିଲୁ ଗର୍ଭକୁ ॥
ଶୁଣ ରୁକ୍ମିଣୀ ବ୍ରହ୍ମଜ୍ଞାନ । ବେଦ ଏ ବ୍ରହ୍ମ ଆଦି ଜନ୍ମ ॥
କରୁଣା ସିନ୍ଧୁଙ୍କ ମହିମା । କହି ନ ପାରେ ହରବ୍ରହ୍ମା ॥
ଶୁଣ ସୁଜନେ ମନ ଦେଇ । ଅମୃତମୟ ରସ ଏହି ॥
ଏ ରସହୀନ ଶିଶୁଦାସ । ପାଇବ ବୋଲି ଜନେ ରସ ॥

ଇତି ଶ୍ରୀ କଲ୍‌କୀ ଭାଗବତେ ମହାପୁରାଣେ ଶ୍ରୀ ରୁକ୍ମିଣୀ
ବାସୁଦେବ ସମ୍ବାଦେ ନାମ ଦ୍ୱିତୀୟୋଽଧ୍ୟାୟଃ ।



## ତୃତୀୟ ଅଧ୍ୟାୟ

### ରୁକ୍ମିଣୀ ଉବାଚ

ରୁକ୍ମିଣୀ ବୋଲନ୍ତି ଗୋସାଇଁ । ଅତି ପବିତ୍ର କଥା ଏହି ॥
ମୋ ଆଗେ କହ ଦାମୋଦର। ସକଳ ପାପ ହେଉ ଦୂର ॥

### ଶ୍ରୀ ବାସୁଦେବୋବାଚ

ଶ୍ରୀହରି ବୋଲନ୍ତି ଗୋ ସହି । ଅତି ରହସ୍ୟ ଶୁଣ ତୁହି ॥
ବ୍ରାହ୍ମଣ କ୍ଷୁଧାରେ ବିକଳ । ଦେଖି ତା ଦଗଧ ପଟଳ ॥
ବୋଇଲା କି ବୁଦ୍ଧି କରିବି । ଆତ୍ମା ତ ରଖି ନ ପାରିବି ॥
ତାହାର ହୃଦେ ବାଞ୍ଛା କଲା । ମୋ କର୍ମ ପୋଡୁ ଏ ବୋଇଲା ॥
ନିଶ୍ଚୟ ଭକ୍ଷିବି ଗରଳ । ମୋ ସତ୍ୟ ହୋଇବ ବିଫଳ ॥
ମନକୁ ନିବୃତ୍ତି କରିବି । ନିଶ୍ଚୟ ପ୍ରାଣ ହରାଇବି ॥

ମୋହର ବନ୍ଧୁ ଜଗନ୍ନାଥ । ସେ ମୋର ପ୍ରାଣ ପଞ୍ଚଭୂତ ॥
ନ ଦେଖି ଖାଇବି ଗରଳ । ଏ କଥା ନିଶ୍ଚୟ ମୋହର ॥
ଏମନ୍ତ ମନେ ବିଚାରିଲା । ରଥରେ ଢଳିଣ ପଡ଼ିଲା ॥
ତାହାର ଦୃଢ଼ ଭକ୍ତି ଜାଣି । ପ୍ରସନ୍ନ ହୋଇଲୁ ମିତଣୀ ॥
ବ୍ରାହ୍ମଣ ଯେଣିକି ଚାହିଁଇ । ମୋ ରୂପ ନୟନେ ଦେଖଇ ॥
ଏମନ୍ତେ ଯାଇ ଦ୍ୱିଜବର । ମିଳିଲା ସାରଙ୍ଗ ବନର ॥
ଚାରି ଦିଗରେ ବନ ଅଛି । ଜନ ମନୁଷ୍ୟ ନାହିଁ କିଛି ॥
ସାରଙ୍ଗ ଦେବୀଙ୍କୁ ଦେଖିଲା । ଆସିଣ କଲ୍ୟାଣ ସେ କଲା ॥
ସାରଙ୍ଗ ଦେବୀ ତାଙ୍କ ବଶ । ବୋଇଲେ କାହାର ତୁ ଦାସ ॥
ବ୍ରାହ୍ମଣ ବୋଲଇ ଭୋ ମାତ । ମୋ ପ୍ରଭୁ ଯଦୁକୁଳ ନାଥ ॥
ମୁଁ ଯେବେ ଭେଟିଲି ତୁମ୍ଭଙ୍କୁ । ଭୋ ମାତ ପୁଣ କହ ମୁକୁ ॥
ସାରଙ୍ଗ ବୋଲଇ ତୁ ଯାଅ । ଏକାଙ୍ଗ ବନେ ଯାଇ ରହ ॥
ଏ କଥା ଶୁଣି ବିପ୍ର ତୋଷ । ମନରେ ଲଭିଣ ହରଷ ॥
ସେଠାରୁ ବେଗେ ଚଳିଗଲା । ପାର୍ବତୀ ବନରେ ମିଳିଲା ॥
ବ୍ରାହ୍ମଣ ଦେହକୁ ସେ ଚାହେଁ । ଦିଶଇ ଶଙ୍ଖ ଚକ୍ର ମୟେ ॥
ବୋଲଇ ନିସ୍ତରିଲି ମୁହିଁ । ଏ ବନେ ପ୍ରଭୁ ଛନ୍ତି ରହି ॥
ଏମନ୍ତେ ଘାଟିଆ ଶବର । ଚଣ୍ଡୀଙ୍କୁ ଘେନିଣ ସଙ୍ଗର ॥
ବାଟ ଓଗାଳି ଡାକ ଦେଲା । କିଏ ତୁ ବୋଲିଣ ବୋଇଲା ॥
ସେ ବିପ୍ର ଡରେ ଥରହର । ବୋଲଇ ରଖ ଚକ୍ରଧର ॥
ଏମନ୍ତ ପଚାରି ଶବର । କାହୁଁ ଅଇଲ ଦ୍ୱିଜବର ॥
ବ୍ରାହ୍ମଣ ଦେଖି ମାନ୍ୟ କଲା । ସମସ୍ତ ପଚାରି ଜାଣିଲା ॥
ବୋଇଲା ଶୁଣ ହେ ବ୍ରାହ୍ମଣ । ଆଗେ ଦେଖିବ ଭଗବାନ ॥
ଏମନ୍ତ କହିଣ ଶବର । ରହିଲା ଆପଣା ମନ୍ଦିର ॥
ବ୍ରାହ୍ମଣ ବିଚାରଇ ମନ । ଏ ବାଟେ କରିବି ଗମନ ॥
ଯେବେ ମୁଁ ପଥ ନ ଜାଣିବି । ଗହନ ବନରେ ପଶିବି ॥

ଏମନ୍ତ ଭାବି ବିପ୍ର ଯାଇ । ଭୁବନେଶ୍ୱରଙ୍କୁ ଦେଖଇ ॥
ଦେଖିଣ ହେଲା ତୋଷ ମନ । ଏଠାରେ ଛନ୍ତି ଭଗବାନ ॥
ଏ ଗିରି ଦେଖିବଇଁ ମୁହିଁ । ପ୍ରଭୁ ଅଛନ୍ତି ଅବା ରହି ॥
ପର୍ବତ ଉପରେ ଉଠିଲା । ହୃଦରେ ଆନନ୍ଦ ଜନ୍ମିଲା ॥
ଦେଖିଲା ମହାଭୟ ଲିଙ୍ଗ । କମଳେ ଶୋଭିତ ତା ଅଙ୍ଗ ॥
ଦେଖି ଚକିତ ବିପ୍ର ହୋଇ । ଭୋ ଲିଙ୍ଗ ଅଛି ଗୁପ୍ତ ହୋଇ ॥
ଦେଖିଣ ତାଙ୍କୁ ମାନ୍ୟ କରି । ଭୋ ଶମ୍ଭୁ ଦେଖିବି ମୁଁ ହରି ॥
ମନରେ ଏମନ୍ତ ପାଞ୍ଚିଲା । ପୁଣି ସେ ରଥରେ ବସିଲା ॥
ଶୁଣ ରୁକ୍ମିଣୀ ମନ ଦେଇ । ଭକତ ବଡ଼ ଦୁଃଖ ପାଇ ॥
ପୁଣି ସେଠାରୁ ବାହୁଡ଼ିଲା । କପିଳ ଆଶ୍ରମେ ମିଳିଲା ॥
ଦେଖିଲା ଏକଇ ଶବର । ଧନୁ ଧରିଛି ତାର କର ॥
ବସୁ ଶବର ହାତେ ସେହି । ତାହାର ପଣନାତି ହୋଇ ॥
ଦିଶଇ ଶଙ୍ଖ ଚକ୍ର ରୂପ । ଦେଖି ଶବର ମନ ତୋଷ ॥
ମାଧବୀ ଲତା ପାଶେ ଯାଇ । ଶବର ଅଛଇ ଅନାଇଁ ॥
ବ୍ରାହ୍ମଣ ଦେଖିଣ ଶବର । ବେଗେ ଯୋଡ଼ଇ ବେନି କର ॥
ବୋଲଇ ଶୁଣିମା ଗୋସାଇଁ । କେ ତୁମ୍ଭେ କମଳାର ସାଇଁ ॥
ଶବର ବୋଲଇ ହେ ରହ । କାହିଁକି ଯାଉଅଛ କହ ॥
ଦୂତ ପଣରେ ବାହୁ ରଥ । ଅଗମ୍ୟ ଭୂମି ଏହି ପଥ ॥
ଯେଣୁ ଏ ମହାଘୋର ପଥ । ଏଠାରୁ ପଳାଅ ତୁରିତ ॥
ଥିଲେ ତୁ ଜୀବନ ନ ପାଇ । ବ୍ୟାଘ୍ର ଭଲ୍ଲୁକ ଯିବେ ଖାଇ ॥
ଆମ୍ଭେ ତ ବଣର ଶବର । ମାରି କରିବୁ ତୋତେ ଦୂର ॥
ବ୍ରାହ୍ମଣ ବୋଲଇ ହୋ ଭାଇ । ତୁମ୍ଭଙ୍କୁ ଦେଖିଲଇଁ ମୁହିଁ ॥
ବୋଲଇ ଶବର ତୁ ନୋହୁ । ବିଷ୍ଣୁ ଭକତ ଅଂଶ ବହୁ ॥
ତୁମ୍ଭେ ସୁଜ୍ଞାନୀ ସାଧୁଜନ । ବାସୁଛି କର୍ପୂର ଚନ୍ଦନ ॥
ଯେ ପୁଣି ଦେବଯୋଗ୍ୟ ହୋଇ । ଶବର ପାଇବ ତା କାହିଁ ॥

ପ୍ରତ୍ୟକ୍ଷ ଦେବଙ୍କ ସଦୃଶ । ମୋତେ ତ ତେମନ୍ତ ଦିଶୁଛ ।।
କମଳ ପ୍ରାୟେ ତୋର ଚକ୍ଷୁ । ମୋତେ ତ ବିଷ୍ଣୁପ୍ରାୟେ ଦିଶୁ ।।
ବିପ୍ରଙ୍କୁ ଦେଖିଣ ଏମନ୍ତ । ଶବର କଲା କୋଳାଗ୍ରତ ।।
ମନରେ ଲଭିଲା ହରଷ । ମୁଖ ହୋଇଲା ହସ ହସ ।।
ପଚାରେ କାହିଁ ତୁମ୍ଭ ଘର । କିମ୍ପାଇଁ ଆଗମନ ତୋର ।।
ମିଥ୍ୟା ନକହ ବିପ୍ରବର । କେବଣ କାର୍ଯ୍ୟେ ତତପର ।।
ହୀନ ମୁଁ ଅଟେ ଶିଶୁ ଦାସ । କୃଷ୍ଣ ଚରଣେ କରେ ଆଶ ।।

ଇତି ଶ୍ରୀ କଲ୍କୀ ଭାଗବତେ ମହାପୁରାଣେ ରୁକ୍ମିଣୀ
ବାସୁଦେବ ସମ୍ବାଦେ ନାମ ତୃତୀୟୋଽଧ୍ୟାୟଃ ।

# ଚତୁର୍ଥ ଅଧ୍ୟାୟ

## ବ୍ରାହ୍ମଣୋବାଚ

ଦ୍ୱିଜ ବୋଲଇ ଶୁଣ ତୁମ୍ଭେ । ଯହୁଁ ଅଇଲି କହୁଁ ଆମ୍ଭେ ।।
କହଇ ଶୁଣ ତଥ୍ୟ କରି । ଇନ୍ଦ୍ରଦ୍ୟୁମନ ଦୂତ ଚାରି ।।
ଜଗତବନ୍ଧୁଙ୍କୁ ଖୋଜଇ । ଚାରିଆଡ଼କୁ ଦୂତ ଯାଇ ।।
ମୁଁ ଏବେ ଅଇଲି ଏ ଦିଗ । ବହୁତ ପାଇ ଦୁଃଖ ଭୋଗ ।।
ତୁମ୍ଭଙ୍କୁ କି ଯୋଗେ ଦେଖିଲି । ପୂର୍ବେ ମୁଁ ଭାଗ୍ୟ କରିଥିଲି ।।
ମୋତେ ତ ବୁଦ୍ଧି ଦିଶୁନାହିଁ । ଶବର ବୋଲଇ ଗୋସାଇଁ ।।
ତୁମ୍ଭେ ତ ରାଜଦୂତ ଚାଟ । ମୁଁ କିସ କରିବି ପାପିଷ୍ଠ ।।
ଏମନ୍ତ ବଚନ ବୋଇଲା । ନିଶ୍ଚୟ ମୋର ଦିଅଁ ଗଲା ।।
ତା ଲାଗି ଯାଉଅଛି ମୁହିଁ । ତୁ ଏହା ଠାବକଲୁ କାହିଁ ।।
ଅଙ୍ଗ ସଦୃଶ ଦିଅଁ ମୋର । ଆନକୁ ଦୟା ନାହିଁ ତାର ।।
ମୁଁ ଏବେ ଏମନ୍ତ କରିବି । ବିପ୍ରକୁ ବାଣେ ନିବାରିବି ।।
ଏହାକୁ ମାଇଲେ ଏଠାଇଁ । ଦିଅଁକୁ ନ ଜାଣିବେ କେହି ।।
ଦୁର୍ବୁଦ୍ଧି ଶବର ବିଚାର । ଜାଣିଲେ ପ୍ରଭୁ ଚକ୍ରଧର ।।

ମୋ ଭକ୍ତ ହୋଇବ ଦୁଃଖିତ । ବିଅର୍ଥେ ପ୍ରାଣେ ହେବ ହତ ॥
ଶୁଣ ଗୋ ଭୀଷ୍ମକ କୁମାରୀ । ବିପ୍ର ଆମ୍ଭଙ୍କୁ ଚିନ୍ତା କରି ॥
ଭକତ ମନ ଆମ୍ଭେ ଜାଣି । ପେଶିଲୁ ବ୍ରହ୍ମାଙ୍କ ଦୁଲଣୀ ॥
ତକ୍ଷଣେ ଶବର ହୃଦର । ବିଜୟ କଲେ ତତକ୍ଷଣ ॥
ଶବର ମନେ ବିଚାରଇ । ପୂର୍ବେ ଯେ ପିତା ଅଛି କହି ॥
ଇନ୍ଦ୍ରଦ୍ୟୁମନ ନରପତି । ଦୂତ ପେଷିବ ଚଉକତି ॥
ସେ କହେ ଜଗନ୍ନାଥ ନେବ । ପୁରୁଷୋତ୍ତମେ ସେ ବସିବ ॥
ଏ ମୋର ବୋଲ ଆନ ନୋହି । ପୂର୍ବେ ତା ପିତା ଅଛି କହି ॥
ଆଜ ମୁଁ ଏମନ୍ତ କରିବି । ବିପ୍ରଙ୍କୁ ଭୋଗ ସଞ୍ଜା ଦେବି ॥
ଏମନ୍ତ ଜ୍ଞାନ ଯହୁଁ ହୋଇ । ଶବର ବୋଲଇ ଗୋସାଇଁ ॥
ନିରାଶେ ତୁମ୍ଭେ ବୁଲୁଅଛ । ଲକ୍ଷ୍ୟ ଅଟଇ ତୋର କିସ ॥
ବ୍ରାହ୍ମଣ ବୋଲନ୍ତି ଯେ ତହିଁ । ଶୁଣ ଶବର ତୋଷ ହୋଇ ॥
ମୁହିଁ ତ କରିଅଛି ସତ୍ୟ । ଯେବେ ଦେଖିବି ଜଗନ୍ନାଥ ॥
ତେବେ ସେ ଆହାର ମୋହର । କହିଲି ବଚନ ନିକର ॥
ଶବର ବୋଲଇ ହୋ ଦ୍ୱିଜ । କିମ୍ପାଇଁ ହେଉଛ ଦହିର୍ଯ୍ୟ ॥
ମୋହର ବୋଲ ଏବେ କର । ଭକ୍ଷ୍ୟ ଭୋଜନ ବେଗେ ସାର ॥
ହାଣ୍ଡି ତଣ୍ଡୁଳ ସଞ୍ଜା ଦେବା । ଆଜକ ପଣ୍ଡା ହେ ରହିବା ॥
ତୁ ପଛେ ଦିଅଁ ଦେଖ ମୋର । ଏଥିରେ ସନ୍ଦେହ ନ କର ॥
ବ୍ରାହ୍ମଣ ବିଚାରଇ ଚିତ୍ତେ । ନଦେଖି ଭୁଞ୍ଜିବି କେମନ୍ତେ ॥
ମୁଁ ଏବେ କରିବି ଏମନ୍ତ । ବୁଝିବି ଶବରର ଚିତ୍ତ ॥
ଏ ମୋର ନିଶ୍ଚିତ ବଚନ । ବିଷ୍ଣୁଙ୍କୁ ଦେଖିଲେ ଭୋଜନ ॥
ଶୁଣ ଶବର ମୋର ବାଣୀ । ତୁ ବିଞ୍ଚ ମହତ ପରାଣୀ ॥
ବିଷ୍ଣୁ ଦେଖିଲେ ଅନ୍ନ ଖାଇ । ନୋହିଲେ ଏହିଭାବେ ଥାଇ ॥
ବସୁ ଶବର ତାହା ଶୁଣି । କୋପେ ବୋଲଇ ଶିର ଝୁଣି ॥
ଆଜ ରହିଲେ ମୋ ଗୃହରେ । ଦୁହିତା ସମର୍ପିବି ତୋରେ ॥

ନୋହିଲେ ଏମନ୍ତ କରିବି । ତୋ ମୁଣ୍ଡ ଖସାଇଣ ଦେବି ॥
ମୋର ଦୁହିତା ଯେବେ ନେବୁ । ତେବେ ସେ ବିଷ୍ଣୁଙ୍କୁ ଦେଖିବୁ ॥
ନୋହିଲେ ନ ଦେଖିବୁ ହରି । କହିଲି ତତ୍ୱ ଦୃଢ଼ କରି ॥
ଏମନ୍ତ କହନ୍ତେ ଶବର । ଶୁଣି ଉସତ ଦ୍ୱିଜବର ॥
ଚାଣ୍ଡାଳ ହୋଇଥିବ ଯେହୁ । ବିଷ୍ଣୁ ସେବକ ଯେବେ ସେହୁ ॥
ତାକୁ ନ କରିବ ବାରଣ । ଜାଣ ହେ ବିଷ୍ଣୁ ପରାୟଣ ॥
ମୁଁ ଏବେ ଏମନ୍ତ କରିବି । ଶବରେ ସତ୍ୟ କରାଇବି ॥
ଏମନ୍ତ ଭାବିଣ ମନେଣ । ବ୍ରାହ୍ମଣ ବୋଇଲା ବଚନ ॥
ମୋହ ସଙ୍ଗରେ ସତ୍ୟ କର । ପାଣି ତୁ ଦିଅ ହେ ଶଙ୍କର ॥
ତୋ ଝିଅ ମୋତେ ନିଶ୍ଚେ ଦେବୁ । ଜଗତ ବନ୍ଧୁ ଦେଖାଇବୁ ॥
ଶବର ବୋଲେ ତାହା ଶୁଣି । ସତ୍ୟ କହଇ ଦୃଢ଼ ବାଣୀ ॥
ଏହା ଅନ୍ୟଥା ନ କରିବି । ଲଳିତା କନ୍ୟା ତୋତେ ଦେବି ॥
ବୋଲିଣ ଶଙ୍ଖେ ପାଣି ଦେଲା । ବିଷ୍ଣୁଙ୍କୁ ଦେଖ ତ ବୋଇଲା ॥
ଏମନ୍ତ ସତ୍ୟ ଯହୁଁ କରି । ବିପ୍ର ବୋଲଇ ହରି ହରି ॥
ଶବର କଢ଼ାଇଲା ବାଟ । ମିଳିଲେ କୁଞ୍ଜର ନିକଟ ॥
କୁଞ୍ଜ ବିପିନ ଝାଡ଼ ସେହି । ଗହନେ ରଥ ନ ଚଳଇ ॥
ଶବର ବୋଲେ ପଣ୍ଡା ରହ । ଦେଖି ଆସଇ ବେଗେ ଦିଅଁ ॥
ଏମନ୍ତ ଶବର ଚଳିଲା । ଶ୍ରୀ ନୀଳମାଧବ ଦେଖିଲା ॥
ପ୍ରଭୁ ଅଛନ୍ତି ତହିଁ ଶୋଇ । ଶବର ଦେଖିଲାକ ଯାଇ ॥
ଫୁଲ ଗୁଡ଼ିଏ ଘେନି ଗଲା । ସେ ବିଧିମାନ ଆଚରିଲା ॥
ହରିଡ଼ା ବାହାଡ଼ାର ଫଳ । ଘେନି ଚଳିଲା ବସୁପାଳ ॥
ବ୍ରାହ୍ମଣ ନିକଟେ ମିଳିଲା । ସଧୀରେ ବଚନ ବୋଇଲା ॥
ରଥ କୁ ରଖ ଏକଠାଇଁ । ପାଲଟି ଆସ ବେଗ ହୋଇ ॥
ଦୁହେଁ ବିଚାରି ଚଳିଗଲେ । ଆପଣା ମନ୍ଦିରେ ମିଳିଲେ ॥
ଶବର ଘରେ କେହି ନାହିଁ । ଏକା ଲଳିତା ଅଛି ରହି ॥

ଶବର ବୋଲେ ମଞ୍ଜୁବାଣୀ । ପିଣ୍ଡାରେ ବସି ଦ୍ୱିଜମଣି ॥
ଏମନ୍ତ କହି ବେଗେ ଚଳି । ମାଟି ଗୋବର କରେ ବୋଳି ॥
ବେଦୀ ଗୋଟିଏ ନିର୍ମାଣିଲା । ଆପଣା ହସ୍ତରେ ଲିପିଲା ॥
ଉଆ ଚାଉଳ ଦିବ୍ୟ ଫଳ । ସକଳ ଆଣି କଲା ଠୁଳ ॥
କନ୍ୟାକୁ ସଜ କରି ଆଣି । ବେଦୀରେ ବସାଇଲା ପୁଣି ॥
ଭୋ ବିପ୍ର ମୋର ଦୋଷ ନାହିଁ । ତୋ ସୁଖେ ବିଭା ହୁଅ ତୁହି ॥
ଏମନ୍ତ ଶବର କହିଲା । ବ୍ରାହ୍ମଣ ସନ୍ତୋଷ ଲଭିଲା ॥
ତାହାର ବନ୍ଧୁବର୍ଗ ଆସି । ବନ୍ଧାନ୍ତ ବିପ୍ର ଶୁଭ୍ରକେଶୀ ॥
ଆନନ୍ଦ ଉତ୍ସବ ଗହଳ । ବାଢ଼ିଲେ କୋଳି କନ୍ଦମୂଳ ॥
ଶ୍ରୀହରି କହିଛନ୍ତି ଯାହା । ଆନନ୍ଦେ ବିପ୍ର ହୋଇ ବାହା ॥
ଶୁଣ ରୁକ୍ମିଣୀ ମନ ଦେଇ । ଅତି ରହସ୍ୟ କଥା ଏହି ॥
ଏମନ୍ତେ କିଛିଦିନ ଗଲା । ସେ ଦ୍ୱିଜ ମାୟାରେ ପଡ଼ିଲା ॥
ଲଳିତା ତୁଲେ ରତି ରସ । କନ୍ୟା ହୋଇଲା ଗର୍ଭବାସ ॥
ହେ ପ୍ରଭୁ ଜଗତ ଈଶ୍ୱର । କି ବୁଦ୍ଧି କରିବି ଏଠାର ॥
ଶବର ମୋତେ ସତ୍ୟ କଲା । ଏବେ ତ ମାୟା ଆରମ୍ଭିଲା ॥
ଲଳିତା ରାଇଲା ତା କତି । ବୋଇଲା ଶୁଣରେ ଯୁବତୀ ॥
ବ୍ରାହ୍ମଣ ବିଚାରଇ ବସି । ମୋତେ କହିଲେ ବ୍ରହ୍ମରାଶି ॥
ତୁମ୍ଭ ପିତାର ଆଗେ କହ । ବିପ୍ରେ ଦେଖାଅ ନେଇ ଦିଅଁ ॥
ନୋହିଲେ ସତ୍ୟ ଭଗ୍ନ ତାର । କହ ଗୋ ପିତାର ଆଗର ॥
ଶୁଣି ଲଳିତା ବେଗେ ଗଲା । ପିଅର ଆଗରେ କହିଲା ॥
ହେ ପିତା ଶୁଣ ମୋ ବଚନ । ବିପ୍ରେ ଦେଖାଅ ଦିଅଁ ପୁଣ ॥
ପୁତ୍ରୀକି ବୋଇଲା ତୁ କହ । ପ୍ରଭାତେ ଦେଖାଇବି ଦିଅଁ ॥
ରାତ୍ରରେ ଦିଅଁ ଦେଖାଇବି । ଗୋପନ ପୂଜା କରାଇବି ॥
ଏ ବାକ୍ୟ ଦୁହିତା ଶୁଣିଲା । ବିପ୍ରକୁ ଆସି ଜଣାଇଲା ॥
ଶୁଣ ସୁଜନେ ଦେଇ ଚିତ୍ତ । ଏ ଯେ ପୁରାଣ ଭାଗବତ ॥

ଏହା ଯେ ଶୁଣେ ତଥ୍ୟ କରି । ବସଇ ବଇକୁଣ୍ଠ ପୁରୀ ॥
ମୁଁ ଶୂଦ୍ର ହୀନ ଶିଶୁ ଦାସ । କୃଷ୍ଣ ଚରଣେ କରେ ଆଶ ॥

ଇତି ଶ୍ରୀ କଲ୍‌କୀ ଭାଗବତେ ମହାପୁରାଣେ ରୁକ୍ମିଣୀ ବାସୁଦେବ ସମ୍ବାଦେ ନାମ ଚତୁର୍ଥୋଽଧ୍ୟାୟଃ ।



# ପଞ୍ଚମ ଅଧ୍ୟାୟ

## ଶ୍ରୀ ଭଗବାନୋବାଚ

ଶ୍ରୀୟାକୁ କୋଳାଗ୍ରତ କରି । ବୋଲନ୍ତି ଶୁଣ ଗୋ ସୁନ୍ଦରୀ ॥
କହନ୍ତି ଭୀଷ୍ମକ କୁମାରୀ । ଲଳିତା କାହୁଁ ଅବତରି ॥
ବିପ୍ରଙ୍କୁ କେମନ୍ତେ ପାଇଲା । ଏଥିରେ ସଂଶୟ ଜନ୍ମିଲା ॥
ଫେଡ଼ି କହିବା ଚକ୍ରଧର । କେବେ ମୁଁ ପାଇବି ନିସ୍ତାର ॥
ଶ୍ରୀୟା ବଚନେ ନରହରି । ବୋଲନ୍ତି ଶୁଣ ହେତୁ କରି ॥
ଇନ୍ଦ୍ରର ଦୁହିତା ଲଳିତା । ପୂର୍ବ ଜନ୍ମର ଏହି କଥା ॥
ସ୍ୱର୍ଗରେ ହୋଇଲା ଏମନ୍ତ । ବିଧାତା କଲା ଏତେ କୃତ୍ୟ ॥
ଶୁଣ ରୁକ୍ମିଣୀ ଦେଇ ଚିତ୍ତ । ଆମ୍ଭେ ଯେ କହୁଅଛୁ ସତ୍ୟ ॥
ଏ ବିପ୍ର ବସୁ ପଣ୍ଡା ସେହି । ବ୍ରାହ୍ମଣ ପଣନାତି ହୋଇ ॥
ଗଙ୍ଗାଧରର ସୁତ ହାଦେ । ଗୋବିନ୍ଦ କହନ୍ତି ଆନନ୍ଦେ ॥
ସେ ବିପ୍ର ଗଙ୍ଗାକୂଳେ ଗଲା । ପ୍ରଭାତ ସନ୍ଧ୍ୟା ସୁମରିଲା ॥
ଦୃଷ୍ଟି ପଡ଼ିଲା ହାଦେ ମାତ୍ର । ଦ୍ୱିଜ ହୋଇଲା ସ୍ତମ୍ଭୀଭୂତ ॥
ଏମନ୍ତ ଜାଣି ସେ ସୁନ୍ଦରୀ । ଆପଣା ହୃଦରେ ବିଚାରି ॥
ଯେବେ ମୁଁ ଏହାକୁ ବରିବି । ପିତାର ବଇରୀ ହୋଇବି ॥
ଭୋ ପ୍ରଭୁ ତ୍ରାହି କର ମୋତେ। ବ୍ରାହ୍ମଣ ପଡ଼େ ଅସକତେ ॥
ବିପ୍ର ବୋଲଇ ସଖି ଶୁଣ । ଦେଖିଣ ତୋତେ ଦହେ ପ୍ରାଣ ॥
ଏମନ୍ତେ ଦୃଢ଼ ବ୍ରତ କଲା । ଅନେକ ଆକୁଳ ହୋଇଲା ॥
ଆମ୍ଭଙ୍କୁ ସୁମରିଲା ଚିତ୍ତ । ତାହାର ମନ ଜାଣି ମିତ ॥

ମିଳିଲୁ ଗଙ୍ଗାନଦୀ କୂଳେ । ଆମ୍ଭଙ୍କୁ ବିପ୍ର ଦେଖି ଡୋଳେ ॥
ସୁରେଖା ଧଇଲା ଚରଣ । ଆମ୍ଭେ ବୋଧିଲୁ ଦୁଇଜଣ ॥
ବୋଇଲୁ ଶୁଣ ମନ ଦେଇ । ଏକ୍ଷଣି ତୁମ୍ଭ ଭେଟ ନାହିଁ ॥
ଏ ପରେ ବଡ଼ ଦେଉଳର । ଦୁହେଁ ଖଟିବ ମୋ ପୟର ॥
ତୁ ଏବେ ଇନ୍ଦ୍ରପୁରେ ଥିବୁ । ଶବର ଘରେ ଜନ୍ମ ହେବୁ ॥
ଏ ଦ୍ୱିଜ ବସୁ ପଣ୍ଡା ହୋଇ । ମୋତେ ଖୋଜିବ ଦୁଃଖ ପାଇ ॥
ଦୁହେଁ ହୋଇବ ତହିଁ ଭେଟ । ତୁମ୍ଭଙ୍କୁ ନ କଲୁ କପଟ ॥
ତାହାଙ୍କୁ ପ୍ରବୋଧ ଦେଇଣ । କହନ୍ତି ପ୍ରଭୁ ନାରାୟଣ ॥
ଆମ୍ଭଙ୍କୁ ଭେଟିଲ ଗୋ ଯେଣୁ । ମୁକତି ଲଭିବ ଯେ ତେଣୁ ॥
ଶୁଣ ରୁକ୍ମିଣୀ ତାଙ୍କ ଗୁଣ । ପୂର୍ବର ଏମନ୍ତ ଭିଆଣ ॥

## ଶ୍ରୀ ରୁକ୍ମିଣୀ ଉବାଚ

ରୁକ୍ମିଣୀ ବୋଲନ୍ତି ଗୋସାଇଁ । ଶୁଣି ମୁକତି ଲଭିବଇଁ ॥
ବସୁ ଶବର କଲା କିସ । କହିଲେ ଲଭିବି ସନ୍ତୋଷ ॥

## ଶ୍ରୀ ଭଗବାନୋବାଚ

ଶ୍ରୀହରି ବୋଲନ୍ତି ଗୋ ଶୁଣ । ଶବର ପ୍ରବେଶିଲା ବନ ॥
ନୀଳମାଧବ ଯେଉଁଠାରେ । ପ୍ରବେଶ ହେଲା ସେ ସ୍ଥାନରେ ॥
ବୋଇଲା ଶୁଣ ହେ ମାଧବ । ଇନ୍ଦ୍ରଦ୍ୟୁମନ ତୋତେ ନେବ ॥
ଏମନ୍ତ ବୋଲିଣ ତୋଳିଲା । ମୁଖ ସେ ବୁଲାଇ ପଡ଼ିଲା ॥
ମାଧବ ଶୂନ୍ୟେ ଦେଲେ ଡାକ । ବ୍ରାହ୍ମଣ ଆମ୍ଭର ସେବକ ॥
ତାହାକୁ ବେଗେ ଦେଖାଇବୁ । ନୋହିଲେ ପାତକୀ ହୋଇବୁ ॥
ସତ୍ୟ ଭଗନ ହେଲେ ପୁଣ । ମରିବୁ ନର୍କରେ ପଡ଼ିଣ ॥
ଶ୍ରୀହରି ବଚନ ଶୁଣିଣ । ଶବର ମନେ ପାଇ ଜ୍ଞାନ ॥
ଏମନ୍ତ ଶୁଣି ଶୀଘ୍ର ଗତି । ମିଳିଲା ବିପ୍ରବର କତି ॥
ବୋଲଇ ଅନ୍ଧ ଖୋଳା ନାଅ । ଦିଅଁର ଦରଶନ ପାଅ ॥
ବ୍ରାହ୍ମଣ ଚକିତ ହୋଇଲା । ଲଳିତା ଦେଈକି ପୂଛିଲା ॥

ପଣତେ ମାଘୀ ତିଳ ନେଇ । ବାଟେ ତା ଯିବ ହେ ପକାଇ ॥
ଲଳିତା ବାକ୍ୟ ଶୁଣି କର୍ଣ୍ଣେ । ସନ୍ତୋଷ ଲଭେ ବିପ୍ର ମନେ ॥
ଉସ୍ସୁକେ ବାହାର ହୋଇଲା । ଶବର ବାଟ କଢ଼ାଇଲା ॥
ଚାଲଇ ଖରତର ହୋଇ । ତିଳ ପକାଇ ଦେଉଥାଇ ॥
ଏମନ୍ତେ ମାଧବଙ୍କ ସ୍ଥାନେ । ମିଳିଲେ ଶବର ବ୍ରାହ୍ମଣେ ॥
ଚକ୍ଷୁରେ ଚର୍ମ ଖୋଲା ଫେଇ । ଦେଖିଲା ପ୍ରଭୁ ଭାବଗ୍ରାହୀ ॥
ଶବର ଆଡ଼ ହୋଇଗଲା । ବ୍ରାହ୍ମଣ ଦର୍ଶନ ପାଇଲା ॥
ପ୍ରଣାମ କଲା ଗଡ଼ ଘାଲି । ଅଶ୍ରୁ ତା ନୟନରୁ ଗଳି ॥
କୋଟିଏ ଦଣ୍ଡବତ କଲା । ଅନେକ ସ୍ତବ ସେ ପଢ଼ିଲା ॥
ଉଠି ଅନାଇଁ ଦେଲା ଚାହିଁ । ରୋହିଣୀ- କୁଣ୍ଡ ଅଛି ତହିଁ ॥
କାନ ଯେ ଡୋଳାଇ ପଡ଼ିଲା । ବୈକୁଣ୍ଠ ଭୁବନକୁ ଗଲା ॥
ତା ଦେଖି ବିପ୍ରବର ଯାଇ । ତ୍ୱରିତେ କୁଣ୍ଡରେ ମିଳଇ ॥
ଭୂଷଣ୍ଡ କହଇ ବଚନ । ହେ ବିପ୍ର ମୋ ବଚନ ଶୁଣ ॥
ଯେବେ ତୁ କୁଣ୍ଡରେ ପଡ଼ିବୁ । ବହୁତ ପାତକ ଲଭିବୁ ॥
ଇନ୍ଦ୍ରଦ୍ୟୁମନ ଦୂତ ତୁହି । ଅଜ୍ଞାନ ହେଉ କାହିଁପାଇଁ ॥
ଭୂଷଣ୍ଡ ତହୁଁ ଶୁଣି କଥା । ବ୍ରାହ୍ମଣ ପୋତିଲାକ ମଥା ॥
ଏମନ୍ତେ ମିଳିଲା ଶବର । ଦ୍ୱିଜକୁ ଘେନିଣ ସଙ୍ଗର ॥
ତହୁଁ ଚଳିଲେ ଦୁଇଜଣ । ମିଳିଲେ ଆପଣା ଭୁବନ ॥
ଶବର ବିଚାରଇ ମନ । ଦିଅଁତ ରୁଷିଲେ ବହନ ॥
ଏମନ୍ତେ କେତେଦିନ ଗଲା । ଲଳିତା ପୁତ୍ର ଜନ୍ମ କଲା ॥
ବରଷେ ରହି ଦ୍ୱିଜବର । ରାଜ୍ୟକୁ ହୋଇଲା ବାହାର ॥
ରଥ ଚଢ଼ିଲା ଧାତିକାରେ । ଚଳିଲା କୋଶଳ ଦିଗରେ ॥
ଆପଣା ନିଜ ରାଜ୍ୟେ ଯାଇଁ । ରାଜା ଛାମୁରେ ଉଭା ହୋଇ ॥
ବ୍ରାହ୍ମଣ ଚତୁର୍ଭୁଜ ରୂପ । ଦେଖିଣ ବ୍ରାହ୍ମଣ ସ୍ୱରୂପ ॥
ନୃପତି ଦେଖିଣ ହରଷ । ଚାହିଁଣ ବିପ୍ରବର ବେଶ ॥

ଆନନ୍ଦ ଚିତ୍ତେ ଗଡ଼ିଗଲା । ବିଷ୍ଣୁ ମୁଁ ଦେଖିବି ବୋଇଲା ॥
ନୃପତି କଲା ଦୃଢ଼ ସତ୍ୟ । ବିଷ୍ଣୁଙ୍କୁ ଦେଖିବି ନିଶ୍ଚିତ ॥
ବ୍ରାହ୍ମଣ ବୋଲଇ ବଚନ । ଶୁଣ ରାଜନ ଦେଇ ମନ ॥
ପୂର୍ବ ଦିଗରେ ଜମ୍ବୁବନ । ମାଧବୀ ବନେ ଛନ୍ତି କାହ୍ନ ॥
ଶବର ପୂଜୁଅଛି ଦିଅଁ । ଦେଖିଲେ ନ ରହଇ ଦେହ ॥
ସେ ପ୍ରଭୁ ଜଗତର କର୍ତ୍ତା । ଅଖିଳ ବ୍ରହ୍ମାଣ୍ଡ ସୃଜନ୍ତା ॥
ଲତାର ତଳେ ଛନ୍ତି ରହି । ଦେଖି ଅଇଲି ଭାବଗ୍ରାହୀ ॥
ସେ ଗିରି କନକ ସମାନ । ତିନିଶ ଷାଠିଏ ଯୋଜନ ॥
ବନ କଟାଇ ଚାଲ ଯିବା । ଶ୍ରୀଜଗନ୍ନାଥଙ୍କୁ ଦେଖିବା ॥
ବିପ୍ର ମୁଖରୁ ଏହା ଶୁଣି । ବାହାର ସକଳ ସଇନୀ ॥
ଦିବ୍ୟ ଧବଳ ପାଟ ଛତ୍ର । ଚାମର ପଡ଼ଇ ବହୁତ ॥
ସଙ୍ଗତେ ସକଳ ସଇନ୍ୟ । ବାହାରେ ରାଜା ଇନ୍ଦ୍ରଦ୍ୟୁମ୍ନ ॥
ଆଗରେ ବନକୁ ହଣାନ୍ତି । ପଛରେ ସଇନ୍ୟ ଚଳନ୍ତି ॥
ଆସି ରହିଲେ ଯାଜପୁର । ଅରଣ୍ୟ କଟାଇ ଅପାର ॥
ବନକୁ ଛେଦନ ସେ କରି । ଆସି ମିଳିଲେ ନୀଳଗିରି ॥
ବ୍ରାହ୍ମଣ କଢ଼ାଇଲା ବାଟ । ବେଢ଼ି ଚାଲିଲେ ସର୍ବ ଥାଟ ॥
ନୀଳକନ୍ଦରେ ଯାଇ ମେଳା । ସବୁ ହୋଇଛି ଖଣା ଖୋଳା ॥
ରାଜା ହୋଇଲେ ସର୍ବେ ସଜ। ସର୍ବେ ଦିଶନ୍ତି ଚତୁର୍ଭୁଜ ॥
ଏମନ୍ତେ ତହୁଁ ଚଳିଗଲେ । ଶ୍ରୀନୀଳକନ୍ଦରେ ହୋଇଲେ ॥
ନୃପତି ମନେ ବିଚାରିଲା । ହରି ମୁଁ ଦେଖିବି ବୋଇଲା ॥
ରାଜାର ମନ ପ୍ରଭୁ ଜାଣି । ମାୟା ରଚିଲେ ଚକ୍ରପାଣି ॥
କୂଟ କପଟ ନାରାୟଣ । ସହନ୍ତି ନାହିଁ ବଡ଼ପଣ ॥
ଗୁପ୍ତ ହୋଇଲେ ଜଗନ୍ନାଥ । ବ୍ରାହ୍ମଣ ଦେଖିଲା ହରିତ ॥
ନୃପତି ବୋଲେ ଦିଅଁ କାହିଁ । ବ୍ରାହ୍ମଣ ବୋଲେ ନରସାଇଁ ॥
ଦିଅଁତ ଏହିଠାରେ ଥିଲେ । ତୁମ୍ଭଙ୍କୁ ଦେଖି କେଣେ ଗଲେ ॥

ନୃପତି ମନେ ବିଚାରିଲା । ମୋହର କେଉଁ ପାପ ହେଲା ॥
ହରିଙ୍କି ନ ପାଇଲେ ମୁହିଁ । ନିଶ୍ଚେ ମରିବି ବିଷ ଖାଇ ॥
ଆସିଣ ଭେଟିଲେ ଶବର । ପାଏଡ଼ା ପାଡ଼ିଣ ଛାମୁର ॥
ରାଜା ବୋଇଲେ ତାଙ୍କୁ ଚାହିଁ । ମୋ ଦିଅଁ ଲୁଚାଇଲୁ କାହିଁ ॥
ଶବର ବୋଲେ ନରସାଇଁ । ଦିଅଁ ପାଇବୁ ଆଉ କାହିଁ ॥
ଏମନ୍ତ ଶୁଣି ନୃପରାଣ । ଶବରେ କଲେକ ବନ୍ଧନ ॥
ଶବର ବୋଲଇ ମୁରାରୀ । ତୋତେ ମୁଁ ପୂଜା କରୁଥିଲି ॥
ଯେବେ ତୁ ଛାଡ଼ି ଗଲୁ ମୋତେ । ବନ୍ଧାଇ ମରାଉ ବା କେତେ ॥
ଶବର ଯହୁଁ ଦେଲା ଡାକ । ଜାଣିଲେ ଜଗତ ରକ୍ଷକ ॥
ଶୂନ୍ୟେ ଡାକିଲେ ଚକ୍ରଧର । ବନ୍ଧନ ଫେଡ଼ ଶବରର ॥
ଆଗେ ଦେଉଳ ତୋଳାଇବୁ । ପଛରେ ପ୍ରତିଷ୍ଠା କରିବୁ ॥
ଖୋଜିବୁ ବାଙ୍କି ମୁହାଁଣରେ । ଦାରୁ ଅଛନ୍ତି ସେହିଠାରେ ॥
ଏମନ୍ତ କହି ଚଳିଗଲେ । ଶବର ବନ୍ଧନ ଫେଡ଼ିଲେ ॥
ଦେଉଳ ତୋଳାଇ ରାଜନ । ସୁବର୍ଣ୍ଣ ପଦ୍ମ ପୀଢ଼ମାନ ॥
କୁବେର ପୁତଗଣ ତହିଁ । ପଥର ଆଣନ୍ତି ବୁହାଇ ॥
ବସି ଗଢ଼ଇ ବିଶ୍ୱକର୍ମା । ସୁବର୍ଣ୍ଣ ଦେଉଳ ପ୍ରତିମା ॥
ଏମନ୍ତେ ନୀଳଗିରି ହୋଇ । ଶୁଣ ରୁକ୍ମିଣୀ ମନ ଦେଇ ॥
ସହସ୍ରେ ଫଣା ତହିଁ ଅଛି । ସ୍ନାହାନ ମଣ୍ଡପ ହୋଇଛି ॥
ଚାରି ପାରୁଶେ ଇନ୍ଦ୍ରବନ । ଅଯୋଧ୍ୟା ଦ୍ୱାରକା ଭୁବନ ॥
କମଳ ଅନନ୍ତ ଶିରେଣ । ଦେଉଳ ରହିଛି ଶୂନ୍ୟେଣ ॥
କାଳିନ୍ଦୀ ଜଳ ତହିଁ ଅଛି । ପଦ୍ମରେ ବିଜେ ମହାଲକ୍ଷ୍ମୀ ॥
କଳକି ବଉଦ୍ଧ ଆକାର । ବିଷ୍ଣୁର ଯେତେ ଖେଳଘର ॥
ଦେଉଳ ସମ୍ପୂର୍ଣ୍ଣ ହୋଇଲା । ନୃପତି ଦାରୁ ଗଢ଼ାଇଲା ॥

ଶବର ମୁଣ୍ଡଆଇ ଆଣି । ଦାରୁ ଗଢ଼ିଲୁ ଆମ୍ଭେ ପୁଣି ॥
ନୀଳ କନ୍ଦରେ ବସିଥିଲୁ । ପନ୍ଦର ଦିନେ ନିର୍ମାଣିଲୁ ॥
ବଚନ କାହାକୁ ନ କହି । ମଉନେ ବସିଅଛୁ ରହି ॥
ଭକତେ କିଛି ଭାବ ଥିବ । ଅନ୍ନ ଆହାର ନ ରୁଚିବ ॥
କଳିଯୁଗର ଭାବ ଶୁଣ । ପୂର୍ବରୁ ହୋଇଛି ଭିଆଣ ॥
ପୁଣ୍ୟକୁ ନ କରିବେ ଖେଦ । ଆମ୍ଭକୁ କରିଲେ ଦଗଧ ॥
ଏମନ୍ତ ଶୁଣିଣ ରୁକ୍ମିଣୀ । କହନ୍ତି ଯୋଡ଼ି ବେନିପାଣି ॥

## ରୁକ୍ମିଣୀ ଉବାଚ

କେମନ୍ତ ଚିର କାଳ ହୋଇ । ଏ କଥା କହିବା ବୁଝାଇ ॥

## ଶ୍ରୀ ଭଗବାନୋବାଚ

ଶ୍ରୀକୃଷ୍ଣ ବୋଇଲେ ରୁକ୍ମିଣୀ । ଶୁଣ ଗୋ କଳିଯୁଗ ବାଣୀ ॥
ମୁଢ଼େ ମୋ ନାମ ନ ଧରିବେ। ଗୋବିନ୍ଦ ଆମ୍ଭେଟି ବୋଲିବେ ॥
ଆବର ନ କହିବେ କିଛି । ମନରେ କାମ ଥିବେ ଇଛି ॥
ଏମନ୍ତେ ଚାରିଶ ବରଷ । ହୋଇବ ମତ୍ତ ରଙ୍ଗରସ ॥
ଶଏ ଆଠରେ ଆମ୍ଭେ ଯିବୁଁ । ନୀଳକନ୍ଦରବାସୀ ହେବୁଁ ॥
ଅସୁରେ ଆସିବେ ଗୋ ବହି । ଉତ୍କଳେ ନ ରହିବେ କେହି ॥
ଆମ୍ଭେ ଗୋ ଅଛୁ ଏହା ଜାଣି। ଏ ଭୂମି ଭାଙ୍ଗିବ ମିତଣି ॥
ଅନ୍ନ ବ୍ୟଞ୍ଜନ ନ ମିଳିବ । ଦେବତା ଶୁଭେ ନ ପାଳିବ ॥
ରାଜା ହୋଇବେ ରଣ ଭଣ । ପରଜା ନ ରହିବେ ପୁଣ ॥
କହିବା ଶୁଣ ହେତୁ ବାଣୀ । ପାପକୁ ନ ଡରିବେ ପ୍ରାଣୀ ॥
ଏ ମୂଢ଼ ହୀନ ଶିଶୁଦାସ । କହଇ କଳିକାଳ ରସ ॥

ଇତି ଶ୍ରୀ କଲ୍‌କୀ ଭାଗବତେ ମହାପୁରାଣେ ରୁକ୍ମିଣୀ
ବାସୁଦେବ ସମ୍ବାଦେ ନାମ ପଞ୍ଚମୋଽଧ୍ୟାୟଃ ।



# ଷଷ୍ଠ ଅଧ୍ୟାୟ

## ରୁକ୍ମିଣୀ ଉବାଚ

ରୁକ୍ମିଣୀ ବୋଲନ୍ତ ଗୋସାଇଁ । ଶୁଣି ମୁଁ ଆଶ୍ଚର୍ଯ୍ୟ ମଣଇଁ ॥
ତୁମ୍ଭେତ ଦାରୁ ରୁପେ ଥିବ । ଏ କଥା କେମନ୍ତ ହୋଇବ ॥

## ଶ୍ରୀ ଭଗବାନୋବାଚ

ଶ୍ରୀକୃଷ୍ଣ ବୋଲନ୍ତି ଗୋ ସହି । କହିବା ଶୁଣ ମନ ଦେଇ ॥
ଇନ୍ଦ୍ରଦ୍ୟୁମନ ରାଜା ପୁଣ । କଲାକ ଗୁଣ୍ଡିଚା ଭିଆଣ ॥
ତିନି ପଉଟି ଭୋଗ ନିତ୍ୟ । ନିର୍ମାଲ୍ୟ ଭୁଞ୍ଜନ୍ତି ଜଗତ ॥
ଗୁଣ୍ଡିଚା ଯାତ୍ରାର ମହିମା । ଯାହା ସେ ବିହି ଅଛି ବ୍ରହ୍ମା ॥
ଦେଉଳ ଚକ୍ରେ ନେତ ବାନ୍ଧି । ବ୍ରହ୍ମାଙ୍କୁ ନ ଦିଶିଲା ସନ୍ଧି ॥
ବୋଇଲେ ପ୍ରଭୁ ଜଗନ୍ନାଥ । ମୁଁ ସର୍ବ ଭିଆଇବି ଏଥ ॥
ବ୍ରହ୍ମା ଯେ ରାଜାଙ୍କୁ କହିଲେ । ଗୁଣ୍ଡିଚା କର ହୋ ବୋଇଲେ ॥
ନବ ଦିନ ଯେ ଯାତ୍ରା କର । ଗୁଣ୍ଡିଚା ବିଜେ ଚକ୍ରଧର ॥
ଦେଖିବେ ଆନନ୍ଦରେ ଜନ । ପାତକ କରିବେ ଦହନ ॥
ମୋହର ଭଗତ ଭାବିବେ । ଆନନ୍ଦେ ନାମ ଗାଉଥିବେ ॥
ଏକ ଅକ୍ଷରେ ଯେଉଁ ନର । ଭାବୁଣ ଥିବେ ନିରନ୍ତର ॥
ସେ ନିଶ୍ଚେ ପାଇବେ ସୁଗତି । ମୋ ନାମ ଭାବୁଥିବେ ନିତି ॥
ଶୁଣ ରୁକ୍ମିଣୀ ମନଦେଇ । ଭୋଗ ଭୁଞ୍ଜିବ ସୁଖ ପାଇ ॥

## ରୁକ୍ମିଣୀ ଉବାଚ

ରୁକ୍ମିଣୀ ବୋଲନ୍ତି ଅନନ୍ତ । ଏଥେ ମୁଁ ନ ପାଇଲେ ଅନ୍ତ ॥
କାହିଁ ରହିବ ଗୁପ୍ତ ହୋଇ । କଳିରେ ମୋର କଥା ନାହିଁ ॥
କାହିଁ ଭୁଞ୍ଜିବ କେଉଁ ଭୋଗ । ଏ କଥା କହ ମୋର ଆଗ ॥

## ଶ୍ରୀ ଭଗବାନୋବାଚ

କୃଷ୍ଣ ବୋଲନ୍ତି ସଖି ଶୁଣ । ଆମ୍ଭେ ରହିବା ବୃନ୍ଦାବନ ॥

କ୍ଷତ୍ରିୟ ନ ରହିବେ କେହି । ଦନୁଜ ବଢ଼ିବେ ଗୋ ସହି ॥
ଅଷ୍ଟ ଉତ୍ତର ଶତେ ମାସ । ଦେବଙ୍କୁ ଚଉଦ ବରଷ ॥
ଦୁଇଶ ବରଷ ମୁରାଟ । ବଢ଼ିବେ ଦନୁଜଙ୍କ ଥାଟ ॥
ସେଠାରୁ କାଞ୍ଚିପୁର ଯାଏ । କୋଟି ମନୁଷ୍ୟ ଯିବେ କ୍ଷୟେ ॥
ଉତ୍କଳେ ନ ରହିବେ କେହି । କହୁଛି ଶୁଣ ପ୍ରାଣସହୀ ॥
ଅଷ୍ଟପାଟରେ ରାଜା ହୁଏ । ତଦନ୍ତେ ତୁଡ଼ଙ୍ଗ ବିଜୟେ ॥
ସେ ପୁଣି କିଛିଦିନ ଥିବ । କେଶରୀ ଗୁପତ ହୋଇବ ॥
ନୃସିଂହ ହୋଇବ ରାଜନ । ଦନୁଜ ନ ହୋଇବ ପୁଣ ॥
ପ୍ରତାପୀ ହୋଇବ କଳକୀ । ତାହାକୁ ଦୁଷ୍ଟେ ଥିବେ ଶଙ୍କି ॥
ଏମନ୍ତେ କିଛିଦିନ ଥିବ । ସତ୍ୟ ଯେ ଗୋଚର ନୋହିବ ॥
କଳି ହୋଇବ ମହାଘୋର । ପ୍ରାଣୀ ହୋଇବେ ଦୁରାଚାର ॥
ଦେବତାମାନଙ୍କୁ ଧ୍ୱଂସିବେ । ଈଶ୍ୱର ବୋଲି ନ ମାନିବେ ॥
ଦୁଷ୍ଟ ହୋଇବେ ତହିଁ ମତ୍ତ । ବୋଲିବେ ଦେଖିଯିବା ଯାତ ॥
ଯୁବତୀ ହୋଇବେ ବାହାର । ଭର୍ତ୍ତାକୁଘେନି ସଙ୍ଗତର ॥
ସମସ୍ତେ ଈଶ୍ୱରଙ୍କ ତହିଁ । ରୁଣ୍ଡ ହୋଇବେ ଗୀତ ଗାଇ ॥
ନାନାଦି ବାଦ୍ୟ ବାଜୁଥିବ । ନିଶାଣମାନ ଉଡୁଥିବ ॥
ନାଚିବେ ଉନମତ ହୋଇ । ସ୍ତିରୀଙ୍କି ଡାକିବେ ତୁହାଇ ॥
ସେ ନାରୀ ଉଚ୍ଚାଟ ହୋଇବେ। ଲାଜେ ଓଢ଼ଣୀ ଦେଉଥିବେ ॥
ବିଟପୀ ହସୁଥିବେ ଚାହିଁ । ତାଳି ମାରିଣ ଗୀତ ଗାଇ ॥
ଏମନ୍ତେ କିଛିଦିନ ଅନ୍ତେ । ଈଶ୍ୱର ରହିବେ ଗୁପତେ ॥
ଶୁଣ ରୁକ୍ମିଣୀ ମନ ଦେଇ । ଯେ ଶିବ ନିଷ୍କାଞ୍ଚନ ଦେହୀ ॥
ତାହାଙ୍କୁ କାହିଁ ଅଛି ଭେଟ । ଯା ମନ ନୁହଇ ଉଚ୍ଚାଟ ॥
ତାହାଙ୍କୁ ଦେଖିବେ ସେ କାହିଁ। ଯେ ହର ଅନନ୍ତ ଗୋସାଇଁ ॥
ସ୍ତିରୀ ପୁରୁଷ ତହିଁ ଯିବେ । ବର ଯେ ପାଇଲୁ ବୋଲିବେ ॥
ଶୁଣିଣ ସନ୍ଥ ଜନମାନେ । ଦେଖି ଆସିବେ ତତକ୍ଷଣେ ॥

ଦେବୀ ଯେ ବିଶ୍ରାମିବେ ତହିଁ । ବୋଲିବେ ଅଇଲ କିମ୍ପାଇଁ ॥
ସଣ୍ଟ ହୋଲିବେ ଆଗୋ ମାତ । ଦେଖି ଅଇଲୁ ତୁମ୍ଭ କୃତ୍ୟ ॥
ଏମନ୍ତ ହୋଇବ ଯେ ସ୍ତିରୀ । ଧାଇଁବେ ଗୃହ ତ୍ୟାଗ କରି ॥
ବୋଲିବେ ଶୁଣିବା ଭୋ ମାତ । ସେବା କରିବୁ ଦେବା ସୁତ ॥
ଉଆ ଚାଉଳ ଗୁଆ ଫଳ । ଦେଇଣ ହୋଇବେ ଉଲ୍ଲୋଳ ॥
ଦୁବ ବରତ ଘେନି କରେ । ଆସିବେ ସେଠାରେ ତପ୍ପରେ ॥
ଶାଶୁ ଶ୍ୱଶୁର ଥିବେ ଘର । ତାହାଙ୍କୁ ମାରିବେ ଟାକର ॥
ବିଟପୀ ହୋଇ ନ ମାନିବେ । ପର ପୁରୁଷେ ମନ ଦେବେ ॥
ଭର୍ତ୍ତାଙ୍କୁ ଭର୍ସନା କରିବେ । ମଥାରେ ଟାକର ମାରିବେ ॥
ଗୃହରୁ ହୋଇବେ ବାହାର । କହିବେ ଅନେକ ପ୍ରକାର ॥
ଶୁଣ ଗୋ ଭୀଷ୍ମକ ଦୁହିତା । ସ୍ତିରୀଙ୍କ ପ୍ରବଳ ବାରତା ॥
ବ୍ରହ୍ମାଙ୍କୁ ଅଗୋଚର ଯେହୁ । ମାନବେ ଜାଣିବେ ତା କାହୁଁ ॥
ରୁକ୍ମିଣୀ ବୋଇଲେ ଗୋସାଇଁ । ଅତି ରହସ୍ୟ ଦେଲ କହି ॥
ହୀନ ଯେ ମୁହିଁ ଶିଶୁଦାସ । ଦୟା କରିବେ ପୀତବାସ ॥

ଇତି ଶ୍ରୀ କଳ୍କୀ ଭାଗବତେ ମହାପୁରାଣେ ରୁକ୍ମିଣୀ
ବାସୁଦେବ ସମ୍ବାଦେ ନାମ ଷଷ୍ଠୋଽଧ୍ୟାୟଃ ।



## ସପ୍ତମ ଅଧ୍ୟାୟ

### ଶ୍ରୀ ବାସୁଦେବୋବାଚ

ଶୁଣ ରୁକ୍ମିଣୀ ଦେଇ ମନ । ଏ କଳିଯୁଗର ଭିଆଣ ॥
ରାଜା ପଶିବେ ଯାଇ ବନ । ବ୍ରାହ୍ମଣ ହୋଇବେ ନିର୍ଗୁଣ ॥
ଗୋଦାନ କରିବେ ଯେ ଭୂଇଁ । ଦାନ ହରିବେ ନରସାଇଁ ॥
ବ୍ରାହ୍ମଣେ ନ ପଶିବେ କର୍ମେ । ସନ୍ଧ୍ୟା ହୁଡ଼ିବେ ମତି ଭ୍ରମେ ॥
ଏ କଥା ହୋଇବ ନିୟତ । ଦାନ ଘେନିବେ ଅବଧୂତ ॥

ଏମନ୍ତେ ବେଦ ଗୁପ୍ତ ପୁଣ । ଦ୍ୱିଜେ ହୋଇବେ ରଣଭଣ ॥
ଗର୍ଭିଣୀ ସଙ୍ଗେ ଅଙ୍ଗ ସଙ୍ଗ । ଯେଣୁ ହୋଇବେ ମତି ଭଙ୍ଗ ॥
ଅନୀତିମାନ ଆଚରିବେ । ବିଧବା ସ୍ତିରୀଙ୍କୁ ହରିବେ ॥
ପାଞ୍ଚ ବରଷ ପୁତ୍ର ଘେନି । ପଚିଶ ବରଷ କାମିନୀ ॥
କରିବେ ଅତି ରଙ୍ଗ ରସ । ଏଣୁ ହୋଇବେ ଅଳ୍ପାୟୁଷ ॥
ଅନୀତି ଆଚରିବେ ରାଜା । ଅଦୋଷେ ଦଣ୍ଡିବେ ପରଜା ॥
ଏମନ୍ତ କଳି ଭାବ ଦେଖି । ରାଜା ହୋଇବେ ଅବିବେକୀ ॥
ବିବେକ ହୋଇ ଯେହୁ ଥିବ । ତାହାଙ୍କୁ ଧର୍ମ ନ ଛାଡ଼ିବ ॥
ଯେ ଲୋକ ଅନୀତି ଆଚରେ । ଅବଶ୍ୟ ପଡ଼େ ସେ ନର୍କରେ ॥
ବୈଷ୍ଣବ ହୋଇ ଜଣେ ଜଣ । କେ ଭଲେ ନ ମାନେ ବ୍ରାହ୍ମଣ ॥
ସେ ଲୋକ ଗତି ସଖି ଶୁଣ । ସେ ଯାଇ ପଡ଼ଇ ନର୍କେଣ ॥
ଏମନ୍ତ ବ୍ରାହ୍ମଣଙ୍କ ମତ । ଗୁପତ ହୋଇବ ଗୋ ସତ ॥
ବେଦକୁ ନ ପଢ଼ିବେ କେହି । ସେ ବେଦ ଥିବ ଆଡ଼ ହୋଇ ॥
ସ୍ତ୍ରୀମାନେ ନଟୀଯେ ହୋଇବେ । ପୁରୁଷ ଦେଖିଣ ରହିବେ ॥
ଖଣ୍ଡା ସାବେଳି ଥିବେ ବହି । ଯୁଦ୍ଧରେ ନ ରହିବେ କେହି ॥
କଞ୍ଚା ଶୁଖୁଆ ମାଛ ଖାଇ । ରାଣ୍ଡେ ଡେଇଁବେ ମତ ହୋଇ ॥
ବନ୍ଧୁ କୁଟୁମ୍ବ ନ ମନିବେ । ବେଶ୍ୟା ଆଚାରେ ରହିଥିବେ ॥
କଳିର ଏମନ୍ତ ଆଚାର । ଶୁଣ ରୁକ୍ମିଣୀ ପ୍ରାଣ ମୋର ॥
ମନ୍ତ୍ରୀ ନୃପତି ଏକାସନ । ଏମନ୍ତ ଭାବେ ନେବେ ଦିନ ॥
ରାଜାଏ ଧନ ନ ସ୍ଥାପିବେ । ଧନକୁ ଆଶା ବଢ଼ାଇବେ ॥
ସକଳେ ନର୍ତ୍ତନ ନକେବେ । ନୃପ ବଚନ ନ ପାଳିବେ ॥
କରଣେ ହୋଇବେ ରାଉତ । ରାଉତେ ଛତାଧରା ପାତ୍ର ॥
ଏକ ଆରକେ ଅହଂକାରୀ । ରାଜା ଲୁଚିବେ ବନ ଗିରି ॥
ଗାଢ଼େ ପ୍ରତିଜ୍ଞା କରୁଥିବେ । ରଣ ଦେଖିଲେ ବନେ ଯିବେ ॥
ପ୍ରଜାଙ୍କୁ ନିସତ ଦେଖିଣ । ବଳାତ୍କାରରେ ନେବେ ଧନ ॥

ଅଧର୍ମ ଆଚରିବେ ରାଜା । ଅଦୋଷେ ଦଣ୍ଡିବେ ପରଜା ॥
ସର୍ବ ସମ୍ପଦ ନେବେ ଧରି । ବଳାତ୍କାରରେ ଯୂର କରି ॥
ନିସତେ ହୋଇଥିବେ ଯାହା । ଖଣ୍ଡ ପଶରେ ନେବେ ତାହା ॥
ବୋଲିବେ ଆମ୍ଭ ଭାଗ କାହିଁ । କହୁଣି ମାରିବୁରେ ନେଇ ॥
ଶୁଣ ରୁକ୍ମିଣୀ ଦିବ୍ୟ ରସ । ପ୍ରଜାଏ ହୋଇବେ ବିରସ ॥
ଏମନ୍ତେ ଗୁରୁ କଷ୍ଟ ପାଇ । ବସିଣ କାନ୍ଦୁଥିବେ ରହି ॥
ଦୁଷ୍ଟେ କରିବେ ଛିରି ଯୁରି । ଶାଙ୍କୁଳି ଦେଇ ମାଡ଼ ମାରି ॥
ପ୍ରଜାଏ ହୋଇବେ ବହନ । ସତ ଯେ ନ କହି ବଚନ ॥
ଦୁଷ୍ଟେ ଗୋମଦ ମତ୍ତ ହୋଇ । ଅନ୍ୟାୟ କରିବେକ ସେହି ॥
ପଠାଣେ ପ୍ରତାପୀ ହୋଇବେ । ଧରିଣ ଠେଙ୍ଗାରେ ପିଟିବେ ॥
ଜାତି ଗୋ ହରିବେ ଯବନ । କ୍ଷତ୍ରି ପଶିବେ ଘୋରବନ ॥
ବନରେ ଥାଇ ରୋଷ କରି । ପ୍ରଜାଙ୍କୁ ଦଣ୍ଡୁଥିବେ ଧରି ॥
ଏମନ୍ତ କଳିଯୁଗ ରୀତି । ଧର୍ମକୁ ନ କରିବେ ଭୀତି ॥
ପଧାନେ ହୋଇବେ ଗୋ ଦୁଷ୍ଟ । ସାନକୁ କରୁଥିବେ ରୁଷ୍ଟ ॥
ଖତୁଆ ଅପ୍ରମିତ ହୋଇ । ଖଚ କହିବେ ରୋଷ ବହି ॥
ବସୁଧା ଅନୀତି କରିବ । ଶସ୍ୟ ସେ ପ୍ରଭୁତ ନ ଦେବ ॥
ଦେବତା ନ ପାଳିବେ ଜାଣି । ମରୁଡ଼ି କରୁଥିବେ ପୁଣି ॥
ପଦାର୍ଥ ଅଭାବ ହୋଇବ । ଓଡ଼ିଆ କଷ୍ଟେ ଦିନ ନେବ ॥
ଅଧର୍ମ କରୁଥିବେ ଜନ । ନିନ୍ଦିବେ ଯୋଗଜ୍ଞାନ ଧ୍ୟାନ ॥
ପାପରୁ ହୋଇବ ପ୍ରଚାର । ଅକର୍ମେ ନାଶଯିବେ ନର ॥
ପୁରୁଷ ଏମନ୍ତ ହୋଇବେ । ସ୍ତିରୀଙ୍କ ଅର୍ଜନ ଖାଇବେ ॥
ସେ ନର ବଦନ ନ ଚାହିଁ । ମୁଖ ଚାହିଁଲେ ପାପ ହୋଇ ॥
ସୁଜନ ସ୍ତିରୀ କଥା ଶୁଣ । ତା ପତି ସେବାର ଲକ୍ଷଣ ॥
ପତିକି ବିଷ୍ଣୁପ୍ରାୟ ମଣି । ହୃଦୟ ପଦେ ଥାଇ ଜାଣି ॥
ଶୁଣ ରୁକ୍ମିଣୀ ଦେଇ ଚିତ୍ତ । କହିବା ବିଟପୀଙ୍କ ମତ ॥

କ୍ରୋଧରେ ଅଗ୍ନିସମ ହୋଇ । ଦୂରରେ ଥାଇଣ ଗର୍ଜ୍ଜଇ ॥
କୂଟ କପଟେ ଦୂତ ପେଶି । କହଇ ବଚନ ପ୍ରକାଶି ॥
ତୁମ୍ଭର ବିନା ଆନ ନାହିଁ । ତୋ ଭାବ ଜାଣିଅଛି ମୁହିଁ ॥
ଏମନ୍ତେ ସେହୁ ଆଶା କରି । ରାତ୍ରରେ ଆଣେ ଚୋରି କରି ॥
ତାହାକୁ ଆପଣା ମନ୍ଦିର । ସେବା କରଇ ନିରନ୍ତର ॥
ସ୍ୱାମୀର ସଙ୍ଗେ ହସୁଥାଇ । ନିରାଶ ହୋଇ ଶ୍ରମ ପାଇ ॥
ତାହାକୁ ଅଛି ଯେଉଁ ଦଣ୍ଡ । ତପତ ଲୋହା ମାରେ ତୁଣ୍ଡ ॥
ଏମନ୍ତେ ନାରୀଗଣ ଛଟା । କେତେ କହିବା କରି ଚେଷ୍ଟା ॥
ଶାଶୁ ଶ୍ୱଶୁର ମାନ୍ୟ ନାହିଁ । ବୋଲିବେ ଆଲୋ ମୁଣ୍ଡୀ ତୁହି ॥
ତୋହର ଘର ବଧୂ ମୁହିଁ । ମୋତେ ତୁ ରଖିଦେବୁ ନାହିଁ ॥
ପର ପୁରୁଷେ-ନିରନ୍ତର । ସ୍ତିରୀ ହୋଇବେ ତତପର ॥
ପତିଙ୍କି ନ କରିବେ ସେବା । ତାହାଙ୍କ ଦୁଃଖ କି କହିବା ॥
ପତିବ୍ରତାଟି ଯେଉଁ ନାରୀ । ସେ ପାଏ ବଇକୁଣ୍ଠପୁରୀ ॥
ଯେ ନାରୀ ଭକତ ସେବିବ । ସେ ମୋର ନିକଟରେ ଥିବ ॥
ତାହାକୁ ଆନ ନାହିଁ କଛ । ଲକ୍ଷ୍ମୀର ସଙ୍ଗେ ସମକଛ ॥
ଆଉ କଥାଏ ସଖି ଶୁଣ । କହିବା ତହିଁର ଲକ୍ଷଣ ॥
ପ୍ରସାଦେ ପାଣି ନ ଘେନଇ । ପ୍ରଭାତ ବେଳେ ନ ଗାଧୋଇ ॥
ହାଣ୍ଡି ନ ଧୋଇ ପରଖର । ଅଭାବ କରଇ ଗୃହର ॥
ହସଇ ଟହ ଟହ ହୋଇ । ବୋଲଇ ମୋର ସରି ନାହିଁ ॥
ଚଞ୍ଚଳେ ନ ପଶଇ ଘର । ପର ଦୁଆରେ ନିରନ୍ତର ॥
ପର ପାକକୁ ଥାଇ ଚିତ୍ତ । ଘରେ ନ ଭୁଞ୍ଜେ ରାନ୍ଧି ଭାତ ॥
ପୁଅକୁ କରିଥାଇ କାଖ । ଭୁଞ୍ଜିଲେ ନ ଧୂଅଇ ମୁଖ ॥
ଶୁଣ ରୁକ୍ମିଣୀ ମନ ଦେଇ । କହୁଛି ଯାହା ଚିତ୍ତ ଫେଇ ॥
ଧର୍ମ ଯାଆନ୍ତି ଅପସରି । ଅଧର୍ମେ ସ୍ୱାମୀ ତାର ମରି ॥
ସେ ନାରୀ ପଡ଼ଇ ନର୍କର । କହିଲୁ ବଚନ ନିକର ॥

ଏବେ ଗୋ ମନ ଦେଇ ଶୁଣ । ଆମ୍ଭର ଭକତଙ୍କ ଗୁଣ ॥
ମୋ ନାମ ଶ୍ରବଣ କୀର୍ତ୍ତନେ । ଦିନ ବଞ୍ଚନ୍ତି ତୋଷମନେ ॥
ନିରତେ ଭାବନ୍ତି ସେ ହରି । ତାହାଙ୍କୁ ଚିନ୍ତିତ ନ ପାରି ॥
ଦୁଷ୍ଟେ ମୋ ଭକ୍ତ ବୋଲାଇବେ । ମୋ ନାମ ନିନ୍ଦା କରାଇବେ ॥
ବୋଲିବେ ଆମ୍ଭେ ବଡ଼ ଜନ । ପ୍ରତ୍ୟକ୍ଷ ଦେଖ ନାରାୟଣ ॥
ଏମନ୍ତ ଗର୍ବ ବହି ଚିତ୍ତେ । ଉଦର ପୋଷଣ ନିମନ୍ତେ ॥
ମାଳ ଗୁଡ଼ାଏ ହୃଦେ ନାଇ । ବଡ଼ିମା ହେଉଥିବେ କହି ॥
ବୋଲିବେ ଆମ୍ଭ ସରି ଭକ୍ତ । ଲୋଡ଼ିଲେ ନ ଥିବେ ଜଗତ ॥
ତାହାଙ୍କୁ ସେହିକ୍ଷଣି ମାନ୍ୟ । ମିଳିବ ତକ୍ଷଣେ ଭୋଜନ ॥
ସେ ଲୋକ ଅଗତିକି ପାଇ । ଦେଲା ଲୋକର ପୁଣ୍ୟ ହୋଇ ॥
ସ୍ତିରୀଙ୍କି ହସୁଥିବେ ଚାହିଁ । ନୟନ ତରାଟି ଅନାଇ ॥
ସେହି ବୈଷ୍ଣବ ଲୋକ ବଡ଼ । ଏମନ୍ତ କହୁଥିବେ ରାଢ଼ ॥
କପଟ ଟାଣି ବାନ୍ଧିଥାଇ । ସେ ମୁଢ଼ ବଦନ ନ ଚାହିଁ ॥
ମୋ ଗୋଷ୍ଠି ସଙ୍ଗେ ସେ ମିଶଇ । ଟାଣ ବଚନ କହୁଥାଇ ॥
ବୋଲଇ ତୁମ୍ଭେ କିସ ଜାଣ । ଆମ୍ଭେଟି ବଡ଼ ସାଧୁଜନ ॥
ଆମ୍ଭର ସଙ୍ଗେ ବାଦ କର । ଗର୍ବ ବହିଣ ନିରନ୍ତର ॥
ତାହାର ଗର୍ବ କହିବାକୁ । ଆମ୍ଭର କମ୍ପୁଥାଇ ବୁକୁ ॥
ଯେ ମୋର ଭକ୍ତଙ୍କୁ ନିନ୍ଦଇ । ମୋହର ଦୟା ତାକୁ ନାହିଁ ॥
ତାହାକୁ ପାର ନାହିଁ ଜାଣ । ପଡ଼ଇ ଘୋର ନରକେଣ ॥
ମୋହର ଭକ୍ତ ଯେହୁ ପୁଣ । ଅନେକ ଦୁଃଖେ ବଞ୍ଚେ ଦିନ ॥

## ରୁକ୍ମିଣୀ ଉବାଚ

ରୁକ୍ମିଣୀ ବୋଲନ୍ତି ଗୋସାଇଁ । ଅତି ରହସ୍ୟ କଥା ରହି ॥
ଯେମନ୍ତେ ନିର୍ଗୁଣ ହୁଅନ୍ତି । ତାହା କହିବା ଜଗଜ୍ଜ୍ୟୋତି ॥

## ଶ୍ରୀ ବାସୁଦେବୋବାଚ

ଶ୍ରୀକୃଷ୍ଣ ବୋଲନ୍ତି ଗୋ ଶୁଣ । ମୋ ଭକ୍ତ ଥାଇ ଯେ ଦୁଃଖେଣ॥

ନିରତେ ନାମ ଗାଉଥାଇ । ତାହାର ସଙ୍ଗେ ସଙ୍ଗୀ ମୁହିଁ ॥
ହିଂସା ଯେ ଅହଙ୍କାର ନାହିଁ । ମୋ ଭକ୍ତ ନିର୍ମଳ ଅଟଇ ॥
ଯେ ସ୍ଥାନେ ମିଳଇ ଯେମନ୍ତ । ଯେମନ୍ତ ଆଦରଇ ଚିତ୍ତ ॥
ପ୍ରସନ୍ନ ବଦନ ତାହାର । କଣ୍ଠ ତା କୋକିଳ ଗମ୍ଭୀର ॥
ଏମନ୍ତ ଯେଉଁ ଭକ୍ତ ଥାଇ । ତାହାର ସଙ୍ଗେ ସଙ୍ଗୀ ମୁହିଁ ॥
ଅନ୍ନ ନ ଖାଇ ହୁଏ ବଣା । ହୃଦେ ତା କରିଥାଇ ଠଣା ॥
ତାହାକୁ ନ ଚିହ୍ନନ୍ତି କେହି । ଶୁଣ ରୁକ୍ମିଣୀ ମନ ଦେଇ ॥
ଭକ୍ତ ମୋ ବନ୍ଧୁ ବୋଲି ଜାଣ । ଭକ୍ତରେ ନାହିଁ ଭିନ୍ନା ଭିନ୍ନ ॥
ଏମନ୍ତ ଶ୍ରୀହରି କହିଣ । ଅମୃତ କରନ୍ତି ବର୍ଷଣ ॥
ଜୟ ତୁ ଜୟ ଜଗନ୍ନାଥ । ଚରଣ ତଳେ ଲୋଟ ମାଥ ॥

ଇତି ଶ୍ରୀ କଲ୍‌କୀ ଭାଗବତେ ମହାପୁରାଣେ ରୁକ୍ମିଣୀ
ବାସୁଦେବ ସମ୍ବାଦେ ନାମ ସପ୍ତମୋଽଧ୍ୟାୟଃ ।



# ଅଷ୍ଟମ ଅଧ୍ୟାୟ

## ରୁକ୍ମିଣୀ ଉବାଚ

ରୁକ୍ମିଣୀ ବୋଲନ୍ତି ଗୋସାଇଁ । କଲକୀ ଭାଗବତେ ଏହି ॥
ପୁରୁଷେ କି ଆଚର କରି । କହିବା ହେଉ ଦଣ୍ଡଧାରୀ ॥

## ଶ୍ରୀ ବାସୁଦେବୋବାଚ

ପ୍ରଭୁ ବୋଲନ୍ତି ପ୍ରିୟେ ଶୁଣ । ପୁରୁଷ ଆଚାର ଲକ୍ଷଣ ॥
ମାନ୍ୟ ଲୋକଙ୍କୁ ସେ ହସିବେ । ଝିଅଙ୍କି ପୁତୁରା ହରିବେ ॥
ମାନ୍ୟ ଗୌରବ ନାହିଁ କିଛି । ଆଣିକି ପିନ୍ଧାଇବେ କାଛି ॥
ଅନୀତି ଆଚରିବେ ମୁଢ଼େ । ମଦିରା ଖାଇବେ ଗଉଡ଼େ ॥
ଅତି ପ୍ରପଞ୍ଚ ହେବ ମହୀ । ଭଗ୍ନୀକି ହରିବେ ଯେ ଭାଇ ॥
ଏ କଥା ଅବଶ୍ୟ ହୋଇବ । ଗୁରୁଙ୍କୁ ନାନା କଷ୍ଟ ଦେବ ॥

ମୁଖରେ କହୁଥିବେ ମାର । ସେ ପୁଣି ନୋହିବେ କାହାର ॥
ଏମନ୍ତ ବାକ୍ୟେ ଘରେ କଳି । ଦଣ୍ଡେ ହେଁ ନ ଭାଙ୍ଗିବେ ମେଳି ॥
ନିଜ ହୋଇବେ ପର ପୁଣ । ରାଜାଏ ହେବେ ମୂଢ଼ ଜାଣ ॥
ନୀଚ ଯେ ବସିବେ ସଭାରେ । ଶୁଣ ରୁକ୍ମିଣୀ ମନ ସ୍ଥିରେ ॥
ବୃଦ୍ଧକୁ ବାଳକେ ହସିବେ । ମାତାଙ୍କୁ ପୁତ୍ର ନ ମାନିବେ ॥
ଭାଇ ଭାଇରେ ହଣାହଣି । ପିତାଙ୍କୁ ମାରିବେ କହୁଣି ॥
ସାହୁ ତ ଆଶା ଦେଖାଇବେ । କହିଣ ନିରାଶ କରିବେ ॥
ଗୁଣେ ଦେଇଣ ଚାରିଗୁଣ । ଘେନିବେ ମୂଢ଼ ପାପୀଜନ ॥
ଯେ ପ୍ରାଣୀ ଦ୍ୱିଗୁଣ ଘେନଇ । ନରକେ ପଡ଼ଇ ସେ ଯାଇଁ ॥

## ରୁକ୍ମିଣୀ ଉବାଚ

ରୁକ୍ମିଣୀ ବୋଲନ୍ତି ଗୋବିନ୍ଦ । ମନରେ ଲାଗିଲା ବିବାଦ ॥
ସେ ପ୍ରାଣୀ ଆଣେ ଭଗ୍ନ କରି । ତାହାଙ୍କୁ କିସ ଦଣ୍ଡ ହରି ॥
କିମ୍ପାଇଁ ବେଳେ ଆଶା ଦେଲା । ମାଗିଲେ କିମ୍ପା ନ ଶୁଣିଲା ॥

## ଶ୍ରୀ ଭଗବାନୋବାଚ

ଶ୍ରୀକୃଷ୍ଣ ବୋଲନ୍ତି ଗୋ ଶୁଣ । ସେ ପ୍ରାଣୀ ସତ୍ୟଭ୍ରଷ୍ଟ ପୁଣ ॥
ଯା ମନେ ଦୃଢ଼ ଭାବ ନାହିଁ । ଶ୍ୱାନ ହୋଇଣ ବିଷ୍ଠା ଖାଇ ॥
ଯେ ପ୍ରାଣୀ ପରକୁ ନିନ୍ଦଇ । ତାହାକୁ ଅନ୍ନ ନ ମିଳଇ ॥
ଗୁରୁ ନିନ୍ଦୁକ ଯେଉଁ ନର । ଛିଣ୍ଡି ପଡ଼ଇ ତା ଶରୀର ॥
ଯେ ଜନ ପିତା ଅଭକତ । ବିଷ୍ଣୁ ଦୋରେହା ସେ ନିଶ୍ଚିତ ॥
ଯେ ଜନ ମାତା ନିନ୍ଦା କରେ । ଯମ ପକାଏ ନର୍କ ଘୋରେ ॥
ଯେ ନିନ୍ଦେ ବିଷ୍ଣୁ ପଦମାନ । ଅଳପ ଆୟୁ ତାର ଜାଣ ॥
ଯେ ନର ଭକ୍ତଙ୍କୁ ନିନ୍ଦଇ । ତାହାକୁ ରାଜଦଣ୍ଡ ହୋଇ ॥
ଶୁଣ ରୁକ୍ମିଣୀ ଦେଇ ମନ । କଳିର ଏମନ୍ତ ଭିଆଣ ॥
ଖଟୁଆ ହୋଇ ବେଗେ ନରେ । ପୁରୁଷସ୍ତିରୀ ଯଥେଚ୍ଛାରେ ॥
ଚଷାଏ ଲଙ୍ଗଳ ଧରିବେ । ବଳଦ ଦିନକ ଯୋଡ଼ିବେ ॥

ଅଦୋଷେ ଚକ୍ଷୁଥିବେ ମାରି । ଏଣୁ ସେ ଭାବୁଥିବେ ହରି ॥
ତାହାଙ୍କ ଦୁଃଖ ଜାଣି ମିତ । ବ୍ୟାକୁଳ ହେବ ଆମ୍ଭଚିତ୍ତ ॥
ପ୍ରାଣୀ କରିବେ ପାପ ମନ । ତାହାଙ୍କୁ ନ ମିଳିବ ଅନ୍ନ ॥
ଶୁଣ ରୁକ୍ମିଣୀ ମନ ଦେଇ । କଳକୀ ନିନ୍ଦିବେ ଗୋ ସହି ॥
ଭକତ ଦୁଃଖିତ ହୋଇବେ । ଦୁଷ୍ଟ ବୁଦ୍ଧିରେ ନାଶ ଯିବେ ॥
ମୁଁ ତାହା ସହୁଥିବି ଜାଣ । ଦୁଷ୍ଟଙ୍କୁ ସଂହାରିବି ପୁଣ ॥
ସନ୍ଥଙ୍କ ପାଇଁ ଦେହ ଧରି । ଜନ୍ମିବୁ ନର ରୂପ ଧରି ॥
ମୁଲିଆ ଦଗଧ କରିବେ । ସାନ ଗୌଣୀରେ ମୂଲ ଦେବେ ॥
ଯେତେକ ଗୋଚର ଭାଙ୍ଗିବେ । ରାଜାଏ କର ଧରି ନେବେ ॥
ସେବକ ନ ପାଇ ଦର୍ଶନ । ଦୁଃଖରେ ନେଉଥିବେ ଦିନ ॥
କହିଲେ ନ ଶୁଣିବେ ରାଜା । ଚଳିଣ କରିବେ ପରିଯା ॥
ବୋଲିବେ ମୋର ଭାତ ନାହିଁ । ଇଚ୍ଛା ହୋଇଲେ ଯାଅ ତୁହି ॥
ଦୁଃଖୀ ହୋଇବେ ନରନାରୀ । ଖତୁଆ ଥିବେ ରାଜ୍ୟେ ପୂରି ॥
କୂଟ କପଟେ ଥିବେ ପଶି । ରାଜା ଆଗରେ ମିଥ୍ୟା ଭାଷି ॥
ସେ ଜନ ଚାରି ଯୁଗଯାଏ । ଗୋବର ପୋକ ହୋଇଥାଏ ॥
ମୋର ଭକତ ଗୁଣ ଶୁଣ । ସେ ଥାଇ ମଉନ ବ୍ରତେଣ ॥
ସର୍ବ ବିଷୟ ତ୍ୟାଗ କରେ । ହୃଦୟ ମଧ୍ୟରେ ବିଚାରେ ॥
ଦୁଃଖକୁ ସୁଖ କରି ଦେଖେ । ମୋହର ନାମ ବୋଲେମୁଖେ ॥
ସେ ପାଏ ବଇକୁଣ୍ଠେ ସ୍ଥାନ । ଭଣଇ ଶିଶୁ ଦାସ ହୀନ ॥

ଇତି ଶ୍ରୀ କଲ୍‌କୀ ଭାଗବତେ ମହାପୁରାଣେ ରୁକ୍ମିଣୀ
ବାସୁଦେବ ସମ୍ବାଦେ ନାମ ଅଷ୍ଟମୋଽଧ୍ୟାୟଃ ।



# ନବମ ଅଧ୍ୟାୟ

## ରୁକ୍ମିଣୀ ଉବାଚ

ବୋଲନ୍ତି ଭୀଷ୍ମକ ନନ୍ଦିନୀ । ଶୁଣ ହେ ପ୍ରଭୁ ଚକ୍ରପାଣି ॥
କଳି ଯୁଗରେ ନରେ ପଡ଼ି । ଆରତେ ପଡୁଥାଏ ହରି ॥
ତୁମ୍ଭେ ତ ଦେଖୁଥିବ ରହି । ତୁମ୍ଭ ହୃଦରେ ଦୟା ନାହିଁ ॥
ତୁମ୍ଭର ସଞ୍ଚିତ ସକଳ । ଏବେ ତ ହୋଇବ ନିଷ୍ଫଳ ॥
ମାନବମାନେ ଦୁଃଖ ପାଇ । ରହିବେ ଅତି କଷ୍ଟ ହୋଇ ॥
ତାଙ୍କର କେତେ ଦୁଃଖ ହେବ । ତାହା କହିବ ବାସୁଦେବ ॥
ରାଜା ପଶିବେ ଯେବେ ବନ । ରାଜ୍ୟରେ ମୋଗଲ ପଠାଣ ॥
କ୍ଷତ୍ରିୟ ନ ରହିବେ କେହି । ଅଜୀବ ପାତ୍ର ପ୍ରାୟ ହୋଇ ॥
ଏ ସର୍ବ ଏମନ୍ତ ହୋଇବ । ତୁମ୍ଭେ ତ ମଉନେ ବସିବ ॥
ତୋ ଭକ୍ତ ରହିଥିବେ କାହିଁ । କିସ ଖାଇଣ ଦିନ ନେଇ ॥

## ଶ୍ରୀ ଭଗବାନୋବାଚ

ଶ୍ରୀକୃଷ୍ଣ ବୋଲନ୍ତି ଗୋ ଶୁଣ । ଆମ୍ଭେ ପଶିବୁ ଯାଇ ବନ ॥
ନୀଳକନ୍ଦରେ ହେବ ମେଳା । ଆମ୍ଭେ ରହିବୁ ବିନ୍ଧ୍ୟ ଖେଳା ॥
ଛତିଶ ଜାତି ପଳାଇବେ । ଗିରି କନ୍ଦରେ ଲୁଚିଥିବେ ॥
ଓଡ଼ିଶା ଘୋଟିବେ ପଠାଣ । ମାଡ଼ି ରହିବେ ଜମ୍ବୁବନ ॥
ଭକତ ଆକୁଳ ହୋଇବେ । ନାମ ବିକିଣ ଦିନ ନେବେ ॥
ଦିନରେ ଅନ୍ଧାର ହୋଇବ । ବୈଶାଖ କୁହୁଡ଼ି ମାଡ଼ିବ ॥
ରୋଗ ହୋଇବ ଆଠଭାଗ । ଔଷଧ ହୋଇବ ଦ୍ୱିବର୍ଗ ॥
ବୈଦ୍ୟର ମାନ୍ୟ ଥିବ ନାହିଁ । ନିନ୍ଦିବେ ଔଷଧ ନ ପାଇ ॥
ବାସୁଳୀ ଦେବୀଙ୍କି ପୂଜିବେ । ବୋଦା କୁକୁଡ଼ା ବଳି ଦେବେ ॥
ବିଦ୍ୟା ଗୁରୁଙ୍କୁ ମାନ୍ୟ ନାହିଁ । ସଭା ନିନ୍ଦିବେ ମତ୍ତ ହୋଇ ॥
ବହୁତ ପଡ଼ିବ ନିର୍ଘାତ । ବହୁ ମନୁଷ୍ୟ ହେବେ ହତ ॥

ଦୟା ଗୋ ନ କରିବେ ଜାଣି । ଅଳପେ ନାଶଯିବେ ପ୍ରାଣୀ ॥
ପୁରୁଷ ସ୍ତିରୀ ବଶ ହୋଇ । ପରକୁ ତା ପାପେ ପେଶଇ ॥
ଜ୍ୟେଷ୍ଠ ଭ୍ରାତକୁ ନ ମାନିବେ। ଶ୍ୱଶୁର ବୋହୂକୁ ହରିବେ ॥
ରାଜାଏ ଧର୍ମ ନ ପାଳିବେ । ସେ ଯାହା ସୁଖେ ନାଶଯିବେ ॥
ରତି ତଣ୍ଡଙ୍କୁ ରାଜା ଆଶ । ମନ୍ତ୍ରୀ ହୋଇବେ ଅବିଶ୍ୱାସ ॥
ଶାଶୁଙ୍କୁ ବୋହୂ ନ ମାନିବେ । ଦୁର୍ଭାଷା ତାହାଙ୍କୁ କହିବେ ॥
ସ୍ତିରୀଙ୍କି ଅପାତ୍ର ବାଛିଣ । ହସିବେ ପୁରୁଷ ରତନ ॥
ସୁନ୍ଦର ଦେଖିଣ ପୁରୁଷ । ସ୍ତିରୀ ବେଢ଼ିବେ ଅଷ୍ଟାଦଶ ॥
ଶଏ ଆଠରେ ଏତେ ଗୋଳ । ତହିଁକି ରହିଛି ଭୂପାଳ ॥
ଗଙ୍ଗା ବଂଶର ପଣନାତି । ଗୌତମ କୁଳେ ଉତପତି ॥
ସେ ରାଜା ଗୁପ୍ତଭାବେ ଅଛି । ମୋ ନାମ ଭଜିଣ ମୃଗାକ୍ଷି ॥
ଅସୁରେ ଗଦାଘାତ ପାଇ । ବୁଲୁଣ ଥିବେ ବିନ୍ଧ୍ୟମହୀ ॥
ଗୌତମ ଅପ୍ରତ୍ୟୟେ ତାର । ଗୁପତ ରାଜା ମହୀଧର ॥
ଗୋବିନ୍ଦ ନାମ ଭଜୁଥିବ । ତା ଗଡ଼ କଟକେ ହୋଇବ ॥
କଷା କୌପୀନ ଜଟାଧାରୀ । ମୁଖରେ ପଞ୍ଚଦେବ ସ୍ମରି ॥
କମଳ-ବଦନ ସୁନ୍ଦର । କୋକିଳ ବଚନ ଗଭୀର ॥
ସେ ରାଜା ବାହାର ହୋଇବ । ଦନୁଜ ହେଲେ ସଂହାରିବ ॥
ଏକାଙ୍ଗ ଚକ୍ରବର୍ତ୍ତୀ ହୋଇ । ଅସୁର ନ ଥୋଇବ ମହୀ ॥
ଅନେକ ସଂଗ୍ରାମ ହୋଇବ । ରେଣୁରେ ଗଗନ ଲୁଚିବ ॥
ଘୋଡ଼ା ରାଉତ ହୋଇ ମତ୍ତ । ହସ୍ତୀ ଗୋ ପୂରିବେ ବହୁତ ॥
ଏକ ବରଷ ମାତ୍ର ପାଳି । ଓଡ଼ିଶା ନ ପାରିବେ କଳି ॥
ଲୁଚିବେ ଯାଇଁ ସାତଦିନ । ଘୋଟିବେ ଅସୁର ଯବନ ॥
ନ ଲକ୍ଷ କ୍ଷୂର ଶାଣ ଘେନି । ବେଢ଼ିବେ ଅସୁର ସଇନୀ ॥
ରାଜାଙ୍କୁ ରଖିବ ବନ୍ଦିର । ଦକ୍ଷିଣ ପଶ୍ଚିମ ଉତ୍ତର ॥
ପୂର୍ବକୁ ବାହିଯିବ ପଣି । ମୁକୁନ୍ଦ କେଶରୀକି ହାଣି ॥

କଟକ ମାଡ଼ିଣ ବସିବ । ଓଡ଼ିଶା ଆୟତ କରିବ ॥
ରଣ କରିଣ ମହାଘୋର । କୋଠି ବାନ୍ଧିବ ପିପ୍‌ପଳୀର ॥
ଚୌରାଶୀ ବରଷ ପର୍ଯ୍ୟନ୍ତ । ଓଡ଼ିଶା ହେବ ହତ ପାଟ ॥
ଏହି ପ୍ରକାରେ କିଛିଦିନ । ରାଜା ହୋଇବେ ଗଡ଼େ ପୁଣ ॥
ସେ ରାଜା କିଛିଦିନ ଥିବ । ବହୁତ ଦ୍ୱନ୍ଦ୍ୱ ଉପୁଜିବ ॥
ରାଜା ଯେ ନିଉନ ହୋଇବେ। ପ୍ରଧାନ ପଣେ ଦିନ ନେବେ ॥
ଦେବତା ନ ରହିବେ କେହି । ପର୍ବତେ ପଶିବେ ଗୋ ଯାଇଁ ॥
ଆମ୍ଭେ ଗୋ ଗୁପତ ହୋଇବୁ । ପ୍ରାଣୀ ଡାକିଲେ ନ ଶୁଣିବୁ ॥
ଶ୍ରୀହରି ବୋଲନ୍ତି ଗୋ ସହୀ। ଦୟାରେ ଭକ୍ତେ ଥିବେ ରହି ॥
ଯେ ପ୍ରାଣୀ ପର ଦୁଃଖେ ଦୁଃଖୀ। ସେ ମୋତେ ଜାଣେ ପ୍ରାଣସଖି॥
ତାକୁ ମୁଁ ଜାଣଇ ଗୋ ପୁଣି । ହୃଦରେ ବିଜେ ଯେ ରୁକ୍ମିଣୀ ॥
ଏକ ଅକ୍ଷରେ ଯେଉଁ ନର । ଭକ୍ତୁଣ ଥିବେ ନିରନ୍ତର ॥
ତେଣୁ ସେ ଭବରୁ ତରିବ । ଅନନ୍ତ ସଙ୍ଗତରେ ଥିବ ॥
ଦୟାଳୁ ସନ୍ଥଜନ ରହି । ଦୁଷ୍ଟ ଗୋ ନ ରହିବେ କେହି ॥
ମହା ସଂଗ୍ରାମ ଗୋଳ ହେବ । ଅନନ୍ତ ଖଣ୍ଡଗିରି ଥିବ ॥
ମାତା ଯେ ଦକ୍ଷିଣୁ ଚଳିବେ । ଅନେକ ସଂଗ୍ରାମ କରିବେ ॥
ଆମ୍ଭେ ତା ଦେଖୁଥିବୁ ରହି । ଯୁଦ୍ଧ କରିବେ ଚାଟକାଇ ॥
ସେ ଦେବୀ ଡାକିବ ଶୂନ୍ୟେଣା ଦନୁଜ ମାର ନାରାୟଣ ॥
ଆଜ୍ଞା ପାଇଣ ହନୁମନ୍ତ । ଶୂନ୍ୟେଣ ଅଞ୍ଜନାର ସୁତ ॥
ହରି ଚନ୍ଦନ ପଣନାତି । ଆବର ସହଦେବ ମନ୍ତ୍ରୀ ॥
ଅର୍ଜୁନ ତୁଲେ ତେରଜଣ । ମାରିବେ ଧୂମାନ୍ତ କରିଣ ॥
ଓଡ଼ିଶା କଟକର ତହିଁ । ସମସ୍ତେ ଠୁଳ ହେବେ ଯାଇ ॥
ଦେଖି ଆନନ୍ଦେ ଲୋକେ ଯିବେ। ଯୁଦ୍ଧରେ ସମସ୍ତେ ମରିବେ ॥
ଗଦା ପରବ ଯୁଦ୍ଧ ତହିଁ । ଦଇତ୍ୟ ମରିବେ ସେଠାଇଁ ॥

ରକ୍ତ ବହିବ ଦୁଇଧାର । ଟିକିରୀ ଗୋହିରି ଦୁଆର ॥
ସମସ୍ତ ମାରି ମାତା ଯିବ । ଦୁର୍ଗା ଯେ ସନ୍ତୁଷ୍ଟ ଲଭିବ ॥
ଦ୍ୱାପର ରଣ ଶୁଝି ଭୀମ । ରହିବ ଶ୍ରୀ ପୁରୁଷୋତ୍ତମ ॥
ଭୀମ ପଞ୍ଚାକୁ ଚାର ଦେବେ । ଖୋଜିଣ ଦୁଷ୍ଟଙ୍କୁ ମାରିବେ ॥
ସନ୍ଥ ରହିବେ ରାଜ୍ୟେ ପୁଣି । ଶୁଣ ଗୋ ଆଦି ପାଟରାଣୀ ॥
ଅନନ୍ତ ନୃପତି ହୋଇବେ । ଭକତ ସଂସାରେ ରହିବେ ॥
ଦୁଃଖୀ ଦରିଦ୍ର ଯେତେ ଜନ । ମିଥ୍ୟା ନ କହିବେ ବଚନ ॥
ସଂସାର ଧର୍ମ ଆଚ୍ଛାଦିବେ । ଲକ୍ଷ୍ମୀ ଗୋ ସବୁଠାରେ ଥିବେ ॥
ଅନନ୍ତ ରାଜା ମହୀଧର । ଭକତଜୀବନ ମୋହର ॥

## ରୁକ୍ମିଣୀ ଉବାଚ

ରୁକ୍ମିଣୀ ବୋଲନ୍ତି ଗୋସାଇଁ । ଏବେ ଅନନ୍ତ ଛନ୍ତି କାହିଁ ॥
କେଣେ ତାହାଙ୍କ ନିଜ ବାସ । ମୋତେ କହିବା ପୀତବାସ ॥

## ଶ୍ରୀ ଭଗବାନୋବାଚ

ପ୍ରଭୁ ବୋଲନ୍ତି ପ୍ରିୟେ ଶୁଣ । ଅନ୍ତ କରିବ କେହୁ ପୁଣ ॥
ଆଦି ଅନାଦି ବ୍ରହ୍ମ ସେହି । ତାଙ୍କ ନଥିବା ସ୍ଥାନ ନାହିଁ ॥
କାର୍ତ୍ତିକେ ବ୍ରହ୍ମାଣ୍ଡ ଅଛଇ । ଏମନ୍ତେ ସଞ୍ଚରଇ ରହି ॥
ଚଉଦ ବ୍ରହ୍ମାଣ୍ଡ ଗୋ ମିତ । ପ୍ରଥମେ ଯାଜପୁର କ୍ଷେତ୍ର ॥
ଦ୍ୱିତୀୟେ କଟୀ ଯେ କଟକ । ଏକାମ୍ର ବନେ ତ୍ରିଅମ୍ବକ ॥
ଭିଆଇ ତୁଳସୀ ଚଉରା । ଶିରରେ ରାଧା କୃଷ୍ଣ ଲୀଳା ॥
ଅନନ୍ତ ପ୍ରଥମ ବେଦରେ । କାଳିନ୍ଦୀ ଅଛଇ ସେଠାରେ ॥
ସମୁଦ୍ର ବେଢ଼ି ରହିଛଇଁ । ଏମନ୍ତେ ସାତ ସିନ୍ଧୁ ହୋଇ ॥
ଛୟାଶୀ ଯୂଣ ତାର ନାଭୀ । ସେଠାରେ ଯୋଗୀ ଛନ୍ତି ଜାଗି ॥
ଚାରି ଭୁଜରେ ଚାରି ବାଟ । ଶିରେ କାଳିନ୍ଦୀ ପୁଷ୍ପବଟ ॥
ଶୁଣ ରୁକ୍ମିଣୀ ମନ ଦେଇ । ଅତି ଗୁପତ କହିଲଇଁ ॥
ଅନନ୍ତ ଭାବ ଭକ୍ତି ସାର । ଶୁଣିଣ ସର୍ବ ପାପ ହର ॥

ମୂଢ଼ ଅଟଇ ଶିଶୁଦାସ । ଭକ୍ତିକୁ ନାହିଁ ତା ବିଶ୍ୱାସ ॥

ଇତି ଶ୍ରୀ କଳ୍କୀ ଭାଗବତେ ମହାପୁରାଣେ ଶ୍ରୀ ରୁକ୍ମିଣୀ
ବାସୁଦେବ ସମ୍ବାଦେ ନାମ ନବମୋଽଧ୍ୟାୟଃ ।

# ଦଶମ ଅଧ୍ୟାୟ

## ରୁକ୍ମିଣୀ ଉବାଚ

ରୁକ୍ମିଣୀ ବୋଲନ୍ତି ଗୋସାଇଁ । ଅତି ଗୁପତ କଥା ଏହି ॥
ମୋ ଦଧି ତଟେ ନୀଳଗିରି । କେମନ୍ତେ ଅଛନ୍ତି ମୁରାରୀ ॥
ଅନନ୍ତ ଫଣୀ ନାଗ କାହିଁ । କହିବା ତ୍ରିଲୋକ ଗୋସାଇଁ ॥
ଭକତ କେମନ୍ତେ ଅଛନ୍ତି । କାହାକୁ କେ ସେବା କରନ୍ତି ॥
ଅନନ୍ତ ବିଶାଳ ଗଭୀର । କେ ସ୍ଥାନେ ଛନ୍ତି ନିରାକାର ॥
ମୋତେ ତା କହ ଦଇତାରୀ । ଦେଖିବି ଅନନ୍ତ କିଶୋରୀ ॥
ଏମନ୍ତେ ପାଦେ ପଡ଼ି ଶୋଇ । ଉଠ ବୋଇଲେ ଯଦୁସାଇଁ ॥
ତାହାଙ୍କୁ କୋଳକୁ ନେଇଣ । କହନ୍ତି ଶ୍ରୀ ମଧୁସୂଦନ ॥

## ଶ୍ରୀ ଭାଗବାନୋବାଚ

ଯାହା ପୁଚ୍ଛିଲ ପ୍ରାଣସହି । ସୁଚିତ୍ତେ ଶୁଣ ମନ ଦେଇ ॥
ଅନନ୍ତ ନାଗ ଗୋ ସାଧବୀ । ଚୌଷଠି ଯୋଗୀଛନ୍ତି ସେବି ॥
ଆଠଶ କୋଶ ଲାଞ୍ଜ ମୋଟ । ପାତାଳ ବେଢ଼ିଛି ବୈକୁଣ୍ଠ ॥
ମେରୁ ବୋଲିଣ ଯାକୁ କହି । ଅନନ୍ତ ଲାଞ୍ଜ ଅଛି ତହିଁ ॥
ଅଧ ଉର୍ଦ୍ଧ୍ୱରେ ଅଛି ସଞ୍ଚେ । ସତୁରି ଯୋଜନର ଉଚ୍ଚେ ॥
ରୋମକେ ବସୁଧା ରଖିଛି । ଚାରି କୋଣରେ ବଟୁ ଅଛି ॥
ତୋ ଆଗେ କହୁଅଛି ସତ୍ୟ । ଫଣାରେ ଅଛି ସାତଦ୍ୱୀପ ॥
ସର୍ପେକ ବିରାଟ ରୂପେଣ । ଫଣାକେ ରହିଅଛି ଶୂନ୍ୟ ॥
ସେ ଫଣା ସର୍ବ ଜୀବ ଗତି । ତାହାକୁ ଧ୍ୟାୟେ ବେଦପତି ॥

ଛପନା କୋଟି ଜୀବ ଜନ୍ତୁ । ଜାତ ହୁଅନ୍ତି ଜାଣି ତତ୍ତ୍ୱ ॥
ଏମନ୍ତେ ଦୁଇ ଫଣା ଯାଇ । ତୃତୀୟ ଫଣା ଶୁଣ ସହୀ ॥
ସେ ଫଣା ପାତାଳ ଭେଦିଛି । ବୈକୁଣ୍ଠ ପୁରକୁ କ୍ଷେପିଛି ॥
ତହିଁକି ନ ପଶଇ ଜଳ । ଫୁଟିଣ ରହିଛି କମଳ ॥
ଚତୁର୍ଥ ଫଣାର ମହିମା । ନ ଜାଣେ ବେଦପତି ବ୍ରହ୍ମା ॥
ସେ ଫଣାପରେ ନୀଳଗିରି । ବିଜୟ ପ୍ରଭୁ ଦଇତାରି ॥
ଫଣାରେ ଚକ୍ର ଅଛି ରହି । ଶରଣ ଜନଯାକ କହି ॥
ତଥିରେ ବିଜେ ପୀତବାସ । ନିତ୍ୟ ଅଛନ୍ତି ପରକାଶ ॥
ସ୍ନାହାନ ମଣ୍ଡପଟି ସେହି । ସହସ୍ରେ ଫଣା ତାକୁ କହି ॥
ମର୍ତ୍ତ୍ୟ- ବୈକୁଣ୍ଠ ତାକୁ ଜାଣ । ତହିଁ ଖେଳନ୍ତି ନାରାୟଣ ॥
ବାଇଶ ପାବଚ୍ଛ ଗୋ ଯହିଁ । ବତିଶ ଫଣା ସେହିଠାଇଁ ॥
ତହିଁଟି ଅର୍ଗଳି ଦୂଆର । ତ୍ରିଗୁଣ ଜାଗେ ସେହିଠାର ॥
ଅନନ୍ତ ପରିଛାଟି ଚାହିଁ । ଚତୁର୍ଦ୍ଧା ବେଢ଼ି ପଛେ ରହି ॥
ଲକ୍ଷେ ଯୋଜନ ଦୀର୍ଘ ପ୍ରତି । ଏମନ୍ତ ଅନନ୍ତ ଆକୃତି ॥
ସପତ ଫଣାର ମହିମା । ଶୁଣ ଗୋ ଭୀଷ୍ମକର ଜେମା ॥
ସେ ପାଞ୍ଚ ଫଣା ପାଞ୍ଚ ବର୍ଣ୍ଣ । ଏକାଙ୍ଗ ଶଙ୍ଖ ଚକ୍ର ଚିହ୍ନ ॥
ନାଭୀ ଭୁବନେଶ୍ୱର ଏହି । ପାତାଳ ଗଙ୍ଗା ତାକୁ କହି ॥
ଚୌରାଶି କାଠ ସେହି ଗଙ୍ଗା । ବିଜୟ କରିଛି ପନଙ୍ଗା ॥
ଅନନ୍ତ ଶ୍ରୀ ପୁରୁଷୋତ୍ତମ । ଖଟିଅଛନ୍ତି ଗଉତମ ॥
ନିଃଶ୍ୱାସୁ ପବନ ବାହାର । ରୋମରୁ ଗିରି ମେରୁବର ॥
ସୁବର୍ଣ୍ଣ କୁଣ୍ଡ ମେରୁ ଯେହୁ । ଦକ୍ଷିଣ ଭୁଜ ସଖି ସେହୁ ॥
ଗୁଣ୍ଡିଚା ଘର ଯେହୁ ଜାଣ । ସହସ୍ର ଫଣା ନାରାୟଣ ॥
ଇନ୍ଦ୍ରଦ୍ୟୁମନ ଯାହା ଦେଖ । ଯମର ଦକ୍ଷିଣ କଟକ ॥
ଅନନ୍ତ ଆଠଶତ ଫଣା । ଯମ ନବର ତହିଁଠଣା ॥
ମାନବ ଜନେ ଯମ ନେଇ । ସେଠାରେ କାଳଭୟ ନାହିଁ ॥

ସତୁରି ଯୋଜନ ବିସ୍ତାର । ଅନନ୍ତ କଷ୍ଟ ତହିଁ ଘର ॥
ଅଠର ନଳା ତାକୁ କହି । ପୂର୍ବୁ ଅନାଦି ଛନ୍ତି ରହି ॥
ଏମନ୍ତେ ପାଞ୍ଚ କୋଣ ବେଢ଼ି । ଅନନ୍ତ ଫଣା ଅଛି ଘେରି ॥
ଏପରି ଅନନ୍ତର କାୟ । ଦିଶଇ ସବୁ ପଦ୍ମମୟ ॥
ପଦ୍ମପୁରାଣେ ଯାହା କହେ । ପଦ୍ମଫୁଲରେ ଶଙ୍ଖ ରହେ ॥
କାଳିନ୍ଦୀ ନଦୀରେ ଶୟନ । ଅନନ୍ତ ଶିରେ ଭଗବାନ ॥
ପଦ୍ମ ଅଛଇ ତହିଁ ଫୁଟି । ସହସ୍ର ଫଣା ତହିଁ ଘୋଟି ॥
ଚକ୍ରେ ଉଡ଼ଇ ତହିଁ ଝୀନ । କେଶରେ ବିକେ ଭଗବାନ ॥
ଗୋପିକାମାନେ ଖଟି ପାଶ । କିଶୋରୀ ବେଢ଼ିଣ ରାହାସ ॥
ଏମନ୍ତେ ଛନ୍ତି ଭାବଗ୍ରାହୀ । ଅନନ୍ତ ଶିର ଜାଣ ସେହି ॥
ଏମନ୍ତେ ପାଞ୍ଚ ଫଣା ଯାଇ । ଶୁଣ ରୁକ୍ମିଣୀ ମନ ଦେଇ ॥
ଆବର ଦୁଇ ଫଣା ଛତ୍ରୀ । ଶୁଣ ଗୋ ଭୀଷ୍ମଙ୍କ ସନ୍ତତି ॥
ଫଣାଏ ପତ୍ର ପଙ୍କଜର । ଭକତ ଛନ୍ତି ସେହିଠାର ॥
ସମୁଦ୍ର ରୂପେ ଛନ୍ତି ରହି । ଏବେ ଗୋ ଶୁଣ ମନଦେଇ ॥
ନାମେ ଅଛନ୍ତି ତହିଁ ପୂରି । କମଳ ପୁଷ୍ପକୁ ଆବୋରି ॥
ତହିଁଟି ବଦ୍ରିକା ଆଶ୍ରମ । ମର୍ତ୍ତ୍ୟରେ କରିଛି ବିଶ୍ରାମ ॥
ବଉଦ୍ଧ ରୂପ ସେହିଠାରୁ । କଳକୀ ରୂପ ଆମ୍ଭେ ଧରୁଁ ॥
ଏମନ୍ତ ଅନନ୍ତ ସ୍ୱରୂପ । ଭୁଜରେ ଅଛି ପାରାଦ୍ୱୀପ ॥
ଭୁଜଟି ପାରାଦ୍ୱୀପ ହୋଇ । ଭୁଜେଟି ନିକୁମ୍ଭା ଅଟଇ
ଭୁଜେଟି କଣାରକ ବସେ । ଭୁଜରେ ଅଛି ପାରାଦ୍ୱୀପେ ॥
ଏମନ୍ତେ ଚାରିଭୁଜେ ସରି । ଅନନ୍ତ ନବଦ୍ୱୀପେ ପୁରି ॥
ଗୁପତ ଦିବ୍ୟ ଏ ବଚନ । ଆଉ ଫଣାର କଥା ଶୁଣ ॥
ସାତ ସମୁଦ୍ରଯାକ ବେଢ଼ି । ତିନି ବ୍ରହ୍ମାଣ୍ଡ ଯାକେ ପୂରି ॥
ସେ ଫଣା ଜାଣ ନିରାକାର । ଅନନ୍ତ ଶଙ୍ଖ ଚକ୍ରଧର ॥

ବାସୁକି ଶର ହାଦେ ସେହି । ସପ୍ତ ବ୍ରହ୍ମାଣ୍ଡେ ଛନ୍ତି ରହି ॥
ଲାଞ୍ଜ ମେରୁରେ ଯାଇ ଭେଟ । ଶିରେ ନୀଳାଦ୍ରି ପୃଷ୍ଠତଟ ॥
ଅନନ୍ତ ଗର୍ଭର ମହିମା । ଶୁଣ ଗୋ ଭୀଷ୍ମକର ଜେମା ॥
ମେରୁର ଦୀର୍ଘ ପାଞ୍ଚକୋଟି । ସପ୍ତ ବ୍ରହ୍ମାଣ୍ଡ ଅଛି ଘୋଟି ॥

## ରୁକ୍ମିଣୀ ଉବାଚ

ନୌଲକ୍ଷ ଯୁଣ ଉଚ୍ଚ ହୋଇ । ବ୍ରହ୍ମାଙ୍କ ଗୋଚର ନୁହଇ ॥
ରୁକ୍ମିଣୀ ବୋଲନ୍ତି ଶ୍ରୀହରି । କହଇ ମନେ ଭୟ କରି ॥
ତୁମ୍ଭେ କହିଲ ମୋତେ ଯାହା । ଶୁଣି କାତର ମୋର କାୟା ॥
ଅନନ୍ତ ଦେବଙ୍କର କଥା । ଶୁଣି ଖଣ୍ଡିଲା ମୋର ବ୍ୟଥା ॥
ମୋତେ ଦେଖାଅ ନରହରି । ବୋଲିଣ ଦୁଇ ପାଦ ଧରି ॥
ହୀନ ଯେ ଶିଶୁଦାସ ତହିଁ । ପାଦ ପଦ୍ମକୁ ଅଛି ଧ୍ୟାୟି ॥

ଇତି ଶ୍ରୀ କଲ୍କୀ ଭାଗବତେ ମହାପୁରାଣେ ରୁକ୍ମିଣୀ
ବାସୁଦେବ ସମ୍ବାଦେ ନାମ ଦଶମୋଽଧ୍ୟାୟଃ ।



# ଏକାଦଶ ଅଧ୍ୟାୟ

## ଶ୍ରୀ ବାସୁଦେବୋବାଚ

ରୁକ୍ମିଣୀ ବଚନେ ମୁରାରୀ । ଜ୍ଞାନ କହନ୍ତି ହୃଦେ ସ୍ମରି ॥
ଅନନ୍ତ ବିଶ୍ୱ ରୂପ ସହୀ । ବିଷ୍ଣୁଙ୍କ ଗୋଚର ନୁହଇ ॥
ତୁମ୍ଭେ ଦେଖିବ କାହିଁ ପୁଣ । ସେ ସର୍ବ ଘଟେ ନାରାୟଣ ॥
ତାଙ୍କର ଆଦି ଅନ୍ତ ନାହିଁ । କ୍ଷୀର ସମୁଦ୍ରେ ଥାନ୍ତି ଶୋଇ ॥
ତୁମ୍ଭଙ୍କୁ ଦେଖାଇବା ଆସ । କହି ଚଳିଲେ ପୀତବାସ ॥
ଗରୁଡ଼ ପୃଷ୍ଠରେ ବିଜୟ । ରୁକ୍ମିଣୀ ଘେନି ଦେବରାୟ ॥
ମେରୁ କ୍ରୋଟକୁ ଚଳିଗଲେ । କେତେକ ଦୂରରେ ରହିଲେ ॥

ରୁକ୍ମିଣୀ ଚାହିଁ ଭଗବାନ । କହନ୍ତି କୋମଳ ବଚନ ॥
ତୁମ୍ଭେ ଗୋ ଦେଖ ସ୍ଥିର କରି । ନ ପୁଣ ଡର ମାହେଶ୍ୱରୀ ॥
ଶ୍ରୀପାଦ ପଦ୍ମ ଦୃଢ଼େ ଚିନ୍ତ । ଯେବେ ଗୋ ଦେଖିବ ଅନନ୍ତ ॥
ରୁକ୍ମିଣୀ କୃଷ୍ଣ ସୁମରିଲେ । ମାୟା ନ ରହେ ତା ଦେହରେ ॥
ଶ୍ରୀକୃଷ୍ଣ ଚତୁର୍ଭୁଜ ହୋଇ । ଆଦିଙ୍କ ଧ୍ୟାନ କରି ରହି ॥
ତେଣୁ ସେ ସମାଧି ଲାଗିଲା । ଅନନ୍ତ ଫଣା ଦୃଶ୍ୟ ହେଲା ॥
ସାତ ସମୁଦ୍ର ଘୋଟି ମେରୁ । ଦିଶଇ ଶଙ୍ଖ ଚକ୍ର ଫେରୁ ॥
ରୋମକେ ବ୍ରହ୍ମାଣ୍ଡ ଅଛଇ । ସାତ ସମୁଦ୍ର ନୀର ତହିଁ ॥
ବିନ୍ଧ୍ୟ ମନ୍ଦର ଗିରିବର । ଦିଶୁ ଅଛଇ ଭୟଙ୍କର ॥
ଜଗତ ଜୀବ ଜନ୍ତୁ ତହିଁ । କାତି ଗୋଟିକେ ଛନ୍ତି ରହି ॥
ନୟନ ଚନ୍ଦ୍ର ସୂର୍ଯ୍ୟ ଜାଣି । ସପତ ଫଣୀ ଦିନମଣି ॥
ନିଃଶ୍ୱାସୁ ପବନ ବାହାର । ଗରଳ ଧୂମ ଅଗ୍ନିଧାର ॥
କଣ୍ଠ କମଳେ ସରସ୍ୱତୀ । ସହସ୍ରେ ଫଣା ଉଗ୍ର ମୂର୍ତ୍ତି ॥
ଶିରେ କମଳ ଦଳ ଶୋଭା । ପଦ୍ମକେ କୋଟି ଫଣା ପ୍ରଭା ॥
କର୍ଣ୍ଣେ କୁଣ୍ଡଳ ବସୁନ୍ଧରୀ । ଗରଳ ମୁଖେ ଅଗ୍ନି ଫେରି ॥
ନିଃଶ୍ୱାସ ପବନର ବାୟେ । ମେରୁ ପର୍ବତ ଚୂର୍ଣ୍ଣ ହୁଏ ॥
ପାଟିକେ ପାତାଳ ରହିଛି । ପାଟିଏ ସ୍ୱର୍ଗକୁ ପାଇଛି ॥
ନର ଅସୁର ଦେବଗଣ । ଅଛନ୍ତି ଅନନ୍ତ ଗର୍ଭେଣ ॥
ସମୁଦ୍ରେ ତରି ଯେହ୍ନେ ଧାଇଁ । କେମନ୍ତେ ପ୍ରବେଶନ୍ତି ଯାଇ ॥
ଗର୍ଭରେ ସାତ ସିନ୍ଧୁ ଅଛି । ସପତ ବ୍ରହ୍ମାଣ୍ଡ ପୂରିଛି ॥
ମେରୁ ସହିତେ ଗିରିବର । ଅଯୋଧ୍ୟା କାଞ୍ଚିନଗ୍ର ପୁର ॥
ଗୋକୁଳ କୁଞ୍ଜ କୁଞ୍ଜବନ । ଦ୍ୱାରକା ଦ୍ୱାଦଶୀ ଯୋଜନ ॥
ଗୋପ ସହିତେ କୁଞ୍ଜପୁର । ବଦ୍ରିକା ଶ୍ରୀ ନୀଳକନ୍ଦର ॥
ଭାରତ କୁରୁ ସୈନ୍ୟ ଘେନି । ପାଣ୍ଡବ ଯୁଧିଷ୍ଠିର ପୁଣି ॥
ରୁକ୍ମିଣୀ ବୋଇଲେ ଗୋସାଇଁ । କାହିଁ ରହିବା ଆମ୍ଭେ ଯାଇ ॥

ଅନନ୍ତ ଦନ୍ତରେ ଆବର । ଦେବ ଦାନବ ପଡ଼ି ତୁର ॥
ସମସ୍ତ ଗର୍ଭରେ ପୂରିଛି । ଏଥୁଁ କେ ଉବୁରି ଶ୍ରୀବର୍ଷି ॥
ମୋତେ ଉଦ୍ଧାର ଚକ୍ରଧର । ଦେଖି ମୁଁ ମରିବି ନିକର ॥
ଗର୍ଜନ ଭୟଙ୍କର ରୂପ । ଦେଖି ପାଉଛି ମନେ ତାପ ॥
ଭୋନାଥ ଆମ୍ଭେ ଯିବା କାହିଁ । ପଥ ଯେ ନ ଦିଶେ ଗୋସାଇଁ ॥
ତୁମ୍ଭର ପୁଣ୍ୟ ହୋ ଅପାର । ଜାଣିବି ଜ୍ଞାନ ନାହିଁ ମୋର ॥
ଦେବ ଦାନବେ ଦୃଶ୍ୟ ନାହିଁ । ଅସୁର ଜାଣି ଭେଟ ପାଇ ॥
ବ୍ରହ୍ମା ଯେ ନ ଜାଣେ ତଦନ୍ତ । ବିଷ୍ଣୁଙ୍କୁ ଅଗୋଚର ତତ୍ୱ ॥
ତୁମ୍ଭର ପୂର୍ବ ଭାଗ୍ୟ ଫଳେ । ପ୍ରତ୍ୟକ୍ଷ ଦେଖିଲ ହେ ଡୋଳେ ॥
କହି ରୁକ୍ମିଣୀ ମୂର୍ଚ୍ଛାଗଲେ । ଶ୍ରୀହରି ଟୋକିଣ ଧଇଲେ ॥
ମନରେ ଜାଣିଣ ଅନନ୍ତ । ଟୋକି ଧଇଲେ ଜଗନ୍ନାଥ ॥
ବୋଲନ୍ତି ତ୍ରୈଲୋକ୍ୟ ଗୋସାଇଁ । ଏ ରୂପ କେହି ଦେଖିନାହିଁ ॥
ବ୍ରହ୍ମା ବିଷ୍ଣୁଙ୍କୁ ଅଗୋଚର । ଜାଣନ୍ତି ନାହିଁ ଯେ ଶଙ୍କର ॥
ଦ୍ୱାରକା ପୁରକୁ ଚଳିଲେ । ତହୁଁ ବିଜୟ କରି ଗଲେ ॥
ମାୟା ରଚିଲେ ଚକ୍ରପାଣି । ରୁକ୍ମିଣୀ ନ ପାରିଲେ ଜାଣି ॥
ଅନନ୍ତ ପୁରେ ପରବେଶ । ଭକତବନ୍ଧୁ ପୀତବାସ ॥
ରୁକ୍ମିଣୀ ଚେତନା ପାଇଲେ । ସ୍ୱପନ ପ୍ରାୟେ ପ୍ରତେ ଗଲେ ॥
ବୋଲନ୍ତି ଯଦୁକୁଳ ସାଇଁ । ତୁମ୍ଭେ ଗୋ କି ଦେଖିଲ କାହିଁ ॥
ଯାହା ଦେଖିଲ କହ ସତ୍ୟ । ଅନନ୍ତ ଗର୍ଭ ଆଦି ଅନ୍ତ ॥
ଭୀଷ୍ମକ ଦୁହିତା ବୋଲନ୍ତି । ଶୁଣ ହେ ଲକ୍ଷ୍ମୀଦେବୀ ପତି ॥
ତୁମ୍ଭ ସହିତ ମୁଁ ଦେଖିଲି । ଅନାଦି ରୂପ ନିରୂପିଲି ॥
ହୃଦରେ ଭୟ କଲି ଶୁଣି । ବାଟେ କଳଳୀ ପତ୍ର ଜାଣି ॥
ତୁମ୍ଭେ ତ ସର୍ବ ଭୂତେ ଅଛ । ଏହା ମୁଁ ଦେଖିଲି ପ୍ରତ୍ୟକ୍ଷ ॥
କିମ୍ପାଇଁ ସାନ ବଡ଼ କର । ଏହା କହିବା ଚକ୍ରଧର ॥

## ଶ୍ରୀ ଭଗବାନୋବାଚ

ହସି କହନ୍ତି ଚକ୍ରପାଣି । ଶୁଣ ରୁକ୍ମିଣୀ ପ୍ରାଣମଣି ॥
ସତ ଦେଖିଣ ମିଛ କଲ । ସ୍ୱପନ ବୋଲିଣ ବୋଇଲ ॥
ତେଣୁଟି ସାନ ବଡ଼ ଅଛି । ଶୁଣ ଗୋ ଦେବୀ ପ୍ରେମଲକ୍ଷ୍ମୀ ॥
ଭକ୍ତେ ମୋ ଦୁଃଖ ପାଉଥାନ୍ତି । ମୋ ନାମ ନିରତେ ଭାବନ୍ତି ॥
ତେଣୁ ମୁଁ ପାଏ ତାଙ୍କୁ ସୁଖ । ହୃଦରେ ବହିଥାଏ ଦେଖ ॥
ମୁଢ଼େ ମୋ ନାମ ନ ଧରନ୍ତି । ମାୟାରେ ପଡ଼ି ନାଶ ଯାନ୍ତି ॥
ତାଙ୍କର ମୂଳ ଡାଳ ନାହିଁ । ସୟଳେ ପଡ଼ଇ ମିଳାଇ ॥

## ରୁକ୍ମିଣୀ ଉବାଚ

ରୁକ୍ମିଣୀ ବୋଲନ୍ତି ଶ୍ରୀହରି । ଏକଥା କହଇ ମୁଁ ଡରି ॥
ତୁମ୍ଭେ ତ ଅନନ୍ତ ସ୍ୱରୂପ । ଜନ୍ତୁରେ ଭିନ୍ନ ତିନି ରୂପ ॥
କେହୁ ବା ତୁମ୍ଭଙ୍କୁ ଛାଡ଼ିଲା । ଶୟଳେ ପଡ଼ି ନାଶ ଗଲା ॥
ଏକଥା ନୁହଇ ତଦନ୍ତ । ମାୟା ତ କର ଜଗନ୍ନାଥ ॥
ତୁମ୍ଭଙ୍କୁ କିରୂପେ ଭଜିବ । ଭକତ ପଦେ ନିମଜ୍ଜିବ ॥

## ଶ୍ରୀ ଭଗବାନୋବାଚ

ହସି କହନ୍ତି ଚକ୍ରପାଣି । ଶୁଣ ରୁକ୍ମିଣୀ ଦିବ୍ୟ ବାଣୀ ॥
ଆମ୍ଭେ ତ ସର୍ବ ଘଟେ ବ୍ୟାପ୍ତ । ଶୁଣ ମୋ ବଚନ ସ୍ୱରୂପ ॥
କାହିଁ ମୁଁ ନାହିଁ ସାନ ବଡ଼ । ଯେ ମୋତେ ନ ଚିହ୍ନିବେ ମୂଢ଼ ॥
ନୟନେ ଦେଖୁ ଦେଖୁ ବଣା । କୀଟରୁ ବ୍ରହ୍ମଯାଏ ଠଣା ॥
ମୋତେ ନ ଚିହ୍ନେ ମୂଢ଼ମତି । ସେ କାହିଁ ପାଇବେ ସୁଗତି ॥
ଦୃଷ୍ଟି ଆଗରେ ଧରିଥାଇ । ଯାତନା ପାଏ କ୍ଲେଶ ହୋଇ ॥
ଦୟାରେ ନାହିଁ ତାର ମନ । ପରହିଂସନେ ନାହିଁ ମନ ॥
ଯେ ପ୍ରାଣୀ ବିଶ୍ୱାସଘାତକୀ । ପର ଦ୍ୱାରରେ ନାହିଁ ମତି ॥
ଏ ଭାବେ ଯାର ମତି ଥିବ । ସେ କାହିଁ ସୁଗତି ପାଇବ ॥
ଯେ ମୋର ଭାବ ନ ଜାଣଇ । ନରକେ ପଡ଼ି ନାଶ ଯାଇ ॥

ସତ୍ୟ ତୁ ଶୁଣ ଗୋ ରୁକ୍ମିଣୀ । ଏ କଥା ଧ୍ରୁବ ବୋଲି ଜାଣି ॥
ଭକତ ଗୁଣର ମହିମା । ଶୁଣ ଗୋ ଭୀଷ୍ମକର ଜେମା ॥
ଭକ୍ତ ମୋ ସହୋଦର ଜାଣ । ଭକ୍ତରେ ନାହିଁ ଭିନ୍ନା ଭିନ୍ନ ॥
ଯେ ଭକ୍ତ ଗୃହ ମଧ୍ୟେ ଥାଇ । ତାର ମହିମା ଦେବା କହି ॥
ନ ଛାଡ଼େ ଗୃହ ଭାବ ରସ । ମୋଠାରେ କରିଣ ବିଶ୍ୱାସ ॥
ନିରତେ ନାମ ଗାଉଥାଇ । କୁଟୁମ୍ବ ପୋଷେ ମନ ଦେଇ ॥
ଦୟାଳୁପଣେ ଭାଗ୍ୟବନ୍ତ । ଭକ୍ତର ଲକ୍ଷଣ ଏମନ୍ତ ॥
ପ୍ରାଣୀଙ୍କୁ ହିଂସା ନ କରଇ । ପ୍ରସନ୍ନ ହୋଇ ସୁଖେ ଥାଇ ॥
ଦୁଃଖ ହେଲେହେଁ ମନେ ସୁଖୀ । କେବେହେଁ ନୁହଇ ବିମୁଖ ॥
ଶତ୍ରୁକୁ ମିତ୍ରପ୍ରାୟେ ଜ୍ଞାନ । ଭକ୍ତର ଏମନ୍ତ ଲକ୍ଷଣ ॥
ସେ ଭକ୍ତ ଜାଣ ନିର୍ବିକାର । ମୋର ଅଂଶରୁ ଅବତାର ॥
ମୁଁ ତାକୁ କ୍ଷଣେ ନ ଛାଡ଼ଇ । ଅନ୍ତେ ମୋ ଶ୍ରୀଅଙ୍ଗେ ସମ୍ଭାଇ ॥
ଯେ ଭକ୍ତ ଦିଗାମ୍ବର ହୋଇ । ତାର ଭାବନା ଥିବ କାହିଁ ॥
ମୋହ ଯେ ମାୟା ଧନ ଜନ । ତେଜି ହୁଅଇ ଉଦାସୀନ ॥
ସର୍ବ ଲକ୍ଷଣେ ସେହୁ ରହି । ମୋହର ନାମ ଭଜୁଥାଇ ॥
ତାହାର ପାଦ ରଜ ରେଣୁ । ଉଡ଼ି ପଡ଼ଇ ଦେହେ ଯେଣୁ ॥
ଯେଉଁ ଠାବରେ ଭକ୍ତ ପୁଣ । ଭଜଇ ରାଧା କୃଷ୍ଣ ନାମ ॥
ସେ ସ୍ଥାନ ତୁଲ୍ୟ ଆଉ ନାହିଁ । ଇନ୍ଦ୍ର ଭୁବନ ସରି ନୋହି ॥
ସେଠାରେ ଭାଗବତ ଧ୍ୱନି । ତହିଁକି ମୋହର ଦଇନି ॥
ଏତେ ଲକ୍ଷଣ ଯେବେ ଥାଇ । ମୋ ନାମ ଭାବି ସୁଖୀ ହୋଇ ॥
ସେ ଭକ୍ତଅଟେ ମୋର ଦେହୀ । ଫେଡ଼ି କହିଲୁ ପ୍ରାଣସହୀ ॥
ସେ ଭକ୍ତ କୀର୍ତ୍ତନ ମଣ୍ଡଳେ । ଲୋଟଇଁ ମୋହର ପ୍ରେମରେ ॥
ତାହାଙ୍କ ଅଙ୍ଗେ ଥାଇ ରହି । ଉଦାସ ଭାବେ ଗଡୁଥାଇ ॥
ତାହା ଯେ ଭୋଗ ନ କରଇ । ତା ପାପ କହୁଁ ନ ସରଇ ॥
ମୋ ନାମ ଭକ୍ତ ଗାଉଥାଇ । ସେ ଦୁଷ୍ଟପଣ ଆଚରଇ ॥

ତହୁଁ ମୁଁ ବାହାର ହୋଇଣ । ଦୁଷ୍ଟକୁ କୋପ କରେ ପୁଣ ॥
ମୋ ନାମ ନ ଜାଣି ଗୋ ସହି । କୀର୍ତ୍ତନେ ନାଚୁଥାଇ ସେହି ॥
ତହିଁ ନ ଥାଇ କିଛି ଭାବ । ତାର କି ବୈକୁଣ୍ଠରେ ଠାବ ॥
ହୃଦରେ ନ ଥାଇ ବିଶ୍ୱାସ । ମାନ ବହିଲେ ସେ କି ଦାସ ॥
ପଶୁର ପ୍ରାୟେ ସେ ଭୁଞ୍ଜଇ । ମିଛେ କୀର୍ତ୍ତନ ବୋଲି କହି ॥
ଏମନ୍ତେ ପୂଜା ବଳି ଖାଇ । ମିଛରେ ମୋ ଲାଗି ଦିଅଇ ॥
ଶୁଣ ଭକତ ଦିବ୍ୟ ରସ । ଏମନ୍ତେ ପ୍ରାଣୀ ଯାନ୍ତି ନାଶ ॥
ମୂଢ଼େ ମୋ ବଡ଼ିମା କହନ୍ତି । ଆମ୍ଭଙ୍କୁ କେହି ନ ଚିହ୍ନନ୍ତି ॥
କଳିର ଏମନ୍ତ ବେଭାର । ଶୁଣିଣ ମନ ସ୍ଥିର କର ॥
ଅନନ୍ତ ଆଦି ଅନ୍ତ ନାହିଁ । ମାୟାରେ ଖେଳୁଅଛି ରହି ॥
ଏ ଯେ କଳକି ଭାଗବତ । ପ୍ରିୟାକୁ କହିଲେ ଅଚ୍ୟୁତ ॥
ଶିଶୁକୁ ରଖ ଭାବଗ୍ରାହୀ । ଚରଣ ଆଶ୍ରେ କରିଛଇଁ ॥
ମୋତେ ଉଦ୍ଧର ଜଗନ୍ନାଥ । ତୁମ୍ଭେ ତ ଲକ୍ଷ୍ମୀଙ୍କର କାନ୍ତ ॥
ମୁଁ ମୂଢ଼ ନ ଜାଣଇ କିଛି । ଶ୍ରୀ ପଦ୍ମ ପାଦକୁ ଧାୟିଛି ॥

ଇତି ଶ୍ରୀ କଲ୍‌କୀ ଭାଗବତେ ମହାପୁରାଣେ ରୁକ୍ମିଣୀ
ବାସୁଦେବ ସମ୍ୱାଦେ ନାମ ଏକାଦଶୋଽଧ୍ୟାୟଃ ।

## ଦ୍ୱାଦଶ ଅଧ୍ୟାୟ

### ରୁକ୍ମିଣୀ ଉବାଚ

ବୋଲନ୍ତି ଭୀଷ୍ମଙ୍କ ନନ୍ଦିନୀ । ଶୁଣ ହେ ପ୍ରଭୋ ଚକ୍ରପାଣି ॥
ଯେମାନେ ନାମ ଯଜ୍ଞ କରି । କୀର୍ତ୍ତନେ ଭାବୁଥାନ୍ତି ହରି ॥
ଯେମାନେ ଦୃଢ଼େ ନ ଧରନ୍ତି । ସେ ନାମ କି କାର୍ଯ୍ୟେ କହନ୍ତି ॥
ତହିଁରେ ତୁମ୍ଭ ମାୟା ଅଛି । ଫେଡ଼ି ତୁ କହ ଶିରୀବତ୍ସି ॥
ସେ ଯେବେ ଭାବ ନ ଜାଣନ୍ତି । କିମ୍ୱା ସେ କୀର୍ତ୍ତନେ ପଶନ୍ତି ॥

## ଶ୍ରୀ ଭଗବାନୋବାଚ

ଶ୍ରୀକୃଷ୍ଣ ବୋଲନ୍ତି ରୁକ୍ମିଣୀ । ସନ୍ତୋଷ ଲଭ ତାହା ଶୁଣି ॥
ଯେ ମୋର ରାହାସରେ ମିଳି । ନ ପାରେ ହର ବ୍ରହ୍ମା କଳି ॥
ଅଷ୍ଟ ଦଳରେ ଷୋଳ ସଖି । ଶୁଣ ଗୋ ପ୍ରିୟେ ଚନ୍ଦ୍ରମୁଖୀ ॥
ନିତ୍ୟ ସ୍ଥଳରେ ତାଙ୍କ ଘର । ଖଟି ଅଛନ୍ତି ନିରାକାର ॥
ଦେବ ଦାନବେ ଗମ୍ୟ ନାହିଁ । କୀର୍ତ୍ତନେ ଗୋପୀ ଛନ୍ତି ରହି ॥
ଭକତି ଭାବେ ରାସ କରି । ଖେଳନ୍ତି ପ୍ରିୟ ରସ ଭରି ॥
ବାହାର ଯନ୍ତ୍ର ମାଳା ବେଣୁ । ଷୋଳ ଦଳରେ ପଶି ଏଣୁ ॥
ଅଷ୍ଟ ଦଳରେ ପୀତବାସ । ରାଧା ହୋଇଣ କୃଷ୍ଣ ବେଶ ॥
ବେଣୁ ବଜାଇ ନାମ ଗାଇ । ସଧୀରେ ଅଙ୍ଗୁଳି ଚଳାଇ ॥
ଶୁଣ ରୁକ୍ମିଣୀ ଦିବ୍ୟ ବାଣୀ । ରାଧା ସଙ୍ଗତେ ଚକ୍ରପାଣି ॥
ଏମନ୍ତେ ରୁକ୍ମିଣୀ ସୁନ୍ଦରୀ । ପଦ ଛୁଡ଼ିଣ ଦେବୀ ହାରି ॥
ତାହାର ବୁଦ୍ଧି ଭ୍ରଂଶ ହୋଇ । ମଞ୍ଚକୁ ଦେଲା ସେ ଅନାଇ ॥
ଏଣୁ ସେ ପଦ ଛୁଡ଼ିପଡ଼ି । ମୋ ପିତା ଦେଲେକ ଘଉଡ଼ି ॥
ସଂସାରେ ରାଧା କୃଷ୍ଣ କହି । ସ୍ୱରୂପ ଶୁଣ ମନ ଦେଇ ॥
କୀର୍ତ୍ତନ ଚାଳି ନ ଜାଣିଲେ । ଆଗରେ ଦୂରେହା ହୋଇଲେ ॥
କଳି ଯୁଗରେ ତୁମ୍ଭେ ରହ । ଅଚ୍ୟୁତ ରୂପେ ଜାତହୁଅ ॥
ତହିଁ ଗୋ ନାମ ଆଚ୍ଛାଦିବୁ । ଅନେକ କଷ୍ଟେ ଦିନ ନେବୁ ॥
ତେଣୁଟି ଏ ରୂପେ ଅଇଲେ । ଅଚ୍ୟୁତ ରୂପେ ଜନମିଲେ ॥
କଳିଯୁଗରେ ସେହୁ ପୁଣ । ମୋ ନାମ କଲେ ଉଚ୍ଚାରଣ ॥
ସେ ରୂପେ ପାଶୋରିଣ ରହି । ଅଚ୍ୟୁତ ନାମ ଜ୍ଞାନ କହି ॥
ସକଳ ଭୂତେ ପ୍ରକାଶିଲା । ଉଦ୍ଧାମେ ସଂସାର ହୋଇଲା ॥
ଶୁଣ ରୁକ୍ମିଣୀ ପ୍ରାଣମଣି । ପୂର୍ବର ଏମନ୍ତ କାହାଣୀ ॥
ଦ୍ୱାପରେ ଦୁର୍ଗା ରୂପେ ଥାଇ । କଳିରେ ଦେବୀ ବୋଲି କହି ॥
ତହିଁକି କରୁଛୁ ଭିଆଣ । ଅଚ୍ୟୁତ ରୂପେ ନାରାୟଣ ॥

ଗୋରୂପା ଦୁର୍ଗା ହାଦେ ହୋଇ । ଅଚ୍ୟୁତ ରୂପେ ଜାତ ସେହି ॥
ନାମ ଶୁଣନ୍ତି ଯେଉଁ ନର । ନିର୍ମଳ ହୁଅଇ ଶରୀର ॥
ଏମନ୍ତେ ଦେବୀ ରୂପେ ଯାଇ । ଖପରେ ପଡ଼ିବ ଗୋ ସହୀ ॥
କୀର୍ତ୍ତନ୍ ମହିମା ଏମନ୍ତ । ଶୁଣ ଗୋ ପ୍ରାଣର ସଙ୍ଗାତ ॥
ମୋର କୀର୍ତ୍ତନ କଥା ଶୁଣ । କରିବ ନିତ୍ୟ ଆଚରଣ ॥
ଗାୟକ ଦୁଇଜଣ ହେବେ । ପାଳିରେ ପାଞ୍ଚ ଗାଉଥିବେ ॥
ମର୍ଦ୍ଦଳ ଦୁଇ ତାଳ ଶତ । ଉଦ୍ଧାମେ ଭକତ ଏମନ୍ତ ॥
ବଂଶୀର ଧ୍ୱନି ଶିଙ୍ଗା ନାଦ । କୋକିଳ ଗାଉଥିବେ ପଦ ॥
ଏମନ୍ତେ ପ୍ରହରେ କରିବ । ମୋ ପଦ୍ମପାଦେ ଦୃଢ଼େ ଥିବ ॥
ସର୍ବ ଛାଡ଼ିଣ ଏକ ଲୟେ । ତାଳ ଧରିଣ ଉଚ୍ଚେ ଗାଏ ॥
ପଦ ହୁଡ଼ଇ ନାହିଁ ପୁଣ । ମୋ ନାମ କରିବ କୀର୍ତ୍ତନ ॥
ଏମନ୍ତ ଭାବେ ଯେହୁ କରି । ସେ ଭକ୍ତ ଜଗନ୍ନାଥେ ସ୍ମରି ॥
ସେ ମୋର ଭକତ ପ୍ରମାଣ । ଏ କଥା ଧ୍ରୁବ ବୋଲି ଜାଣ ॥
କଳିରେ ନାମ ନ ଧରିବେ । ଗୁରୁଙ୍କୁ ଭର୍ତ୍ସନା କରିବେ ॥
ଧର୍ମ ନ ଚିହ୍ନି ଯିବେ ନାଶ । ଆପଣ ଇଚ୍ଛେ ହେବେ ଦାସ ॥
ଥୋକାଏ ଗଳେ ମାଳ ଭରି । ଗୁପ୍ତେ ହରିବେ ପରସ୍ତିରୀ ॥
ପ୍ରସ୍ତାବ କରି ଗୋ ମିତଣି । ଥୋକାଏ ନ ଘେନିବେ ପାଣି ॥
କୀର୍ତ୍ତନେ କରୁଥିବେ ଗୋଳ । ବୈଷ୍ଣବ ନୁହେଁ ସେ କଟିଳ ॥
ସେଠାରେ ନ ଥାଏଟି ମୁହିଁ । ଶୁଣ ରୁକ୍ମିଣୀ ପ୍ରାଣସହି ॥
ଏମନ୍ତ ଯେ ଅବା କରିବେ । ସେ ମୂଢ଼ ଅନ୍ତେ ନାଶଯିବେ ॥
ଏପରି କଳିର ଭିଆଣ । ଶୁଣ ଗୋ ଆମ୍ଭର ପରାଣ ॥
ଯେ ମୋତେ ଚିହ୍ନି ଭାବୁଥିବେ । ସେ ପ୍ରାଣୀ ସଂସାରୁ ତରିବେ ॥
ସେ ମୋର ନିଜ ଭକ୍ତ ସହୀ । ତାହାଙ୍କ ଜ୍ଞାନ ଦେବା କହି ॥
ଗଙ୍ଗା ଯେ ଆକାଶୁ ଖସିଲା । ଭୂମିରେ ପଡ଼ି ବହିଗଲା ॥
ଅଭକ୍ଷ୍ୟ ଭକ୍ଷ ଜୀବଦାନ । ସେ ପୁଣି ସବୁଙ୍କରି ପ୍ରାଣ ॥

ଅନାଦି ବିଷ୍ଣୁ ତହିଁ ଥାଇ । ତେଣୁଟି ସର୍ବ ପାପ ଦହି ॥
ସେ ନୀର ସର୍ବ ଲୋକେ ଆଣ। ଯେ ଯାହା ପାତ୍ରେ ଭରେ ପୁଣି ॥
ତହିଁଟି ବିକାର ରହିଲା । ଯେ ଯାହା ସ୍ୱଜାତି ଛୁଇଁଲା ॥
ଗଙ୍ଗାକୁ ବିଷ୍ଣୁ ବୋଲି କହି । ଏହା ନ ଜାଣେ ମୂଢ଼ ବାଇ ॥
ନଦୀର ପାଣି ଜାଣି ଶୁଦ୍ଧ । କୂପର ପାଣିଟି ବିଶୁଦ୍ଧ ॥
ଏମନ୍ତେ ଦେଖୁ ଦେଖୁ ବଣା । ସଂସାର ଲୋକମାନେ କଣା ॥
ମୋର ଭକତ ସିନ୍ଧୁପାଣି । ସାଗରୁ ଜାତ କମଳିନୀ ॥
ସେ ଲକ୍ଷ୍ମୀ ସର୍ବ ପିଣ୍ଡ ଦାତା । ଏଣୁଟି ଭକ୍ତ ମୋର ପିତା ॥
ମୋର ଭକତ ମୋର ବନ୍ଧୁ । ଭକ୍ତ ନାମକୁ କୃପାସିନ୍ଧୁ ॥
ଭକ୍ତ ଦର୍ଶନେ ମୂଢ଼ ଜନେ । ବସନ୍ତି ବୈକୁଣ୍ଠ ଭୁବନେ ॥
ମୂଢ଼ ଅଜ୍ଞାନ କଥା ଶୁଣ । ମୁଁ ତା କଳସୀ ପାଣି ଜାଣ ॥
ସେ ଜଳ କାହିଁ ନ ମିଶଇ । ଆପଣାଠାରେ ଲୀନ ହୋଇ ॥
ଯେ ଯାହା ଜାତି ଖାନ୍ତି ପୁଣି । ଅନ୍ୟ ନ ପିଏ ତାହା ଆଣି ॥
ଏମନ୍ତେ ଯେ ପ୍ରାଣୀଟି ଥାଇ । ତାହାର ଜ୍ଞାନ ଉଦେ ନାହିଁ ॥
ଶୁଣ ରୁକ୍ମିଣୀ ପ୍ରାଣମଣି । ଏତେ ଲକ୍ଷଣେ ଭକ୍ତ ଜାଣି ॥
ମୂଢ଼କୁ ଅଗୋଚର ମାୟା । ତୁମ୍ଭଙ୍କୁ କହିଲୁ ଗୋ ପ୍ରିୟା ॥

### ରୁକ୍ମିଣୀ ଉବାଚ

ରୁକ୍ମିଣୀ ବୋଲନ୍ତି ଗୋସାଇଁ । କଥାଏ ପଚାରିବି ମୁହିଁ ॥
ମୋତେ ତ ସନ୍ଦେହ ଲାଗୁଛି । ଫେଡ଼ି ତୁ କହ ଶିରୀପତି ॥
ଏ ଜୀବ ସର୍ବ ଭୂତେ ଥାଇ । କାହୁଁ ଆସିଣ ସଞ୍ଚରଇ ॥
ପୁଣି ଏ ଯାଇ କାହିଁପାଇଁ । ଏ କଥା କହ ଭାବଗ୍ରାହୀ ॥

### ଶ୍ରୀ ବାସୁଦେବୋବାଚ

ପ୍ରଭୁ ବୋଲନ୍ତି ପ୍ରିୟେ ଶୁଣ । ଏ କଥା ସବୁହୁଁ କଠିନ ॥
ମାତା ଯେ ଆଦି ନାରୀ ହୋଇ। ଅନାଦି ତ୍ରୈଲୋକ୍ୟ ଗୋସାଇଁ ॥
ଆଦି ଯେ ବିରାଟ ରୂପରୁ । ବୀଜ ଆସିଲା ତା ଦେହରୁ ॥

ଆଦିତି ବସୁମତୀ ଜାଣ । ରଜ ରୂପରେ ଠୁଳ ଶୂନ୍ୟ ॥
ସେ ରଜୁ ସର୍ବ ଜାତ ହୋଇ । ଛପନ କୋଟି ଜୀବ ମହୀ ॥
ସ୍ଥାବର ଜଙ୍ଗମ ସହିତେ । ଜାତ ହୁଅନ୍ତି ନାନା ମତେ ॥
ଯହିଁରୁ ଜାତ ନାଶ ତହିଁ । ପରମ ବିଷ୍ଣୁ ଅଙ୍ଗେ ରହି ॥
ଜୀବ ଗୋ ରଜରୁ ଉତ୍ପନ୍ନ । ଅନାଦି ଅନନ୍ତ ଭିଆଣ ॥
ଏ ଭାବେ ପିତା ମାତା ଏକ । ଏକରୁ ହୋଇଲା ଅନେକ ॥
ଅନନ୍ତ ବିଶ୍ୱ ଗୋ ଗଭୀର । ଲୀଳା କରନ୍ତି ଚକ୍ରଧର ॥
କାଳିନ୍ଦୀ ଜଳୁ ପଦ୍ମଫୁଟି । ପଦ୍ମରୁ ଜୀବ ଅଛି ଘୋଟି ॥
ଭ୍ରମର ଚୁମ୍ବୁଅଛି ବସି । ଶୁଣ ରୁକ୍ମିଣୀ ଚାରୁହାସୀ ॥
ତହୁଁ ଜନ୍ମନ୍ତି ଜୀବଗଣ । ଶୁଣ ଗୋ ଆମ୍ଭର ପୁରାଣ ॥

### ରୁକ୍ମିଣୀ ଉବାଚ

ରୁକ୍ମିଣୀ ବୋଲନ୍ତି ଗୋବିନ୍ଦ । ଏଥେ ଜନ୍ମିଲା ମନେ ଦ୍ୱନ୍ଦ୍ୱ ॥
ତହୁଁ ଜନ୍ମନ୍ତି ଜୀବଗଣ । ଶୁଣ ହେ ପ୍ରଭୁ ଭଗବାନ ॥
ପଦ୍ମ ଯେ ମାତା ଗର୍ଭେ ଥାଇ । କି ରୂପେ ବାସ ଆମୋଦଇ ॥
ତହିଁରୁ ଭ୍ରମର କେମନ୍ତ । ଚୁମ୍ବଇ ହୋଇ ଭାବଯୁକ୍ତ ॥
ଏ କଥା ଅଟେ ମହାଗୁରୁ । ଫେଡ଼ି କହିବା ମହାମେରୁ ॥

### ଶ୍ରୀ ଭଗବାନୋବାଚ

ଶ୍ରୀକୃଷ୍ଣ ବୋଲନ୍ତି ରୁକ୍ମିଣୀ । ମୋ ମାୟା ଜଗତ ନ ଜାଣି ॥
ପରମହଂସ ରୂପେ ଥାଇ । କାଳିନ୍ଦୀ ଉଛୁଳି ପଡ଼ଇ ॥
କେଶର ଫୁଟିଣ ବାହାର । ତହିଁକି ଆମ୍ଭେ ଯନ୍ତ୍ରକାର ॥
ସଂଯୋଗେ ବୀଜ ଗର୍ଭେ ଯାଇ । କୁମୁଦ ମୁଦ୍ରିତ ହୁଅଇ ॥
ଏମନ୍ତ ଦଶମାସ ଯାଏ । କାଳିନ୍ଦୀ ଜଳେ ପଙ୍କେ ଥାଏ ॥
ସଂପୂର୍ଣ୍ଣ ହୋଇଲେ ରୁକ୍ମିଣୀ । ସଂଯୋଗେ ପଡ଼ଇ ଧରଣୀ ॥
ଆମ୍ଭେ ସଂଯୋଗେ ତାର ଥାଉଁ । ପରମ ଜ୍ଞାନ ତାକୁ କହୁଁ ॥
ଜଗତେ ମୁହିଁ ଖେଳ କରି । ଶୁଣ ଗୋ ରୁକ୍ମିଣୀ ସୁନ୍ଦରୀ ॥

ଆମ୍ଭେଟି ସର୍ବଘଟେ ଜାଣ । ଏ ତତ୍ତ୍ୱେ ଅନାଦି କାରଣ ॥

## ରୁକ୍ମିଣୀ ଉବାଚ

ରୁକ୍ମିଣୀ ବୋଲନ୍ତି ଶ୍ରୀହରି । ପୃଥିବୀ କାହୁଁ ଅବତରି ॥
ଏହା କହିଲେ ଯିବି ପ୍ରତେ । ଗୋପନ ନ କରିବ ମୋତେ ॥

## ଶ୍ରୀ ଭଗବାନୋବାଚ

ଶ୍ରୀକୃଷ୍ଣ ବୋଲନ୍ତି ରୁକ୍ମିଣୀ । ଅବନୀ ଜାତ ଯହୁଁ ପୁଣି ॥
ଅନନ୍ତ ପିଠି କାତିମାନ । ବସୁଧା ରୂପେ ନାରାୟଣ ॥
ସେ ହାଦେ ମେରୁ ରୁଦ୍ର ହୋଇ । ରୁଦ୍ର କପାଳୁ ଜାତ ମହୀ ॥
ବ୍ରାହ୍ମଣଙ୍କର ଜନ୍ମ ଏଥ । ନିତ୍ୟରେ ବିଜେ ଜଗନ୍ନାଥ ॥
ଏ ଭାବେ ବସୁମତୀ ହୋଇ । ଅନନ୍ତ ଶିରିକାତି ସହି ॥
ବ୍ରହ୍ମ ଅକ୍ଷର ବସୁନ୍ଧରୀ । ପାତାଳ ବଇକୁଣ୍ଠ ପୁରୀ ॥
ତୁମ୍ଭଙ୍କୁ କହିଲୁ ସଙ୍ଗାତ । ତୁମ୍ଭେ ମୋ ପ୍ରାଣ ପଞ୍ଚଭୂତ ॥
କଳକି ଭାଗବତ ଶୁଣ । ଏ ଭାବେ ହୋଇଛି ଭିଆଣ ॥
ନାମ ଚିହ୍ନିଲେ ଭେଟ ପାଇ । ନୋହିଲେ କେବେହେଁ ନପାଇ ॥
ମୋ ନାମ ଭକତି ଭୂପାଳ । ଓଁକାରୁ ଅଭୟ ଗୋପାଳ ॥

## ଶ୍ରୀ ରୁକ୍ମିଣୀ ଉବାଚ

ରୁକ୍ମିଣୀ ବୋଲନ୍ତି ଶ୍ରୀହରି । ମୁଁ ଯେ ତୁମ୍ଭର ପରିବାରୀ ॥
ଅନନ୍ତ ନାମ କେତେ ହୋଇ । କହ ହେ କମଳାର ସାଇଁ ॥
ଶ୍ରୀ ଜଗନ୍ନାଥଙ୍କ ଚରଣ । ଆଶ୍ରିତ ଶିଶୁ ଦାସ ଜାଣ ॥

ଇତି ଶ୍ରୀ କଳ୍‌କୀ ଭାଗବତେ ମହାପୁରାଣେ ରୁକ୍ମିଣୀ
ବାସୁଦେବ ସମ୍ବାଦେ ନାମ ଦ୍ୱାଦଶୋଽଧ୍ୟାୟଃ ।



# ତ୍ରୟୋଦଶ ଅଧ୍ୟାୟ

## ଶ୍ରୀ ବାସୁଦେବୋବାଚ

ରୁକ୍ମିଣୀ ବଚନେ ଶ୍ରୀହରି । କହନ୍ତି ପ୍ରଭୁ ଦଇତାରି ॥
ପ୍ରଥମ ନାମ ମୋ ଅନନ୍ତ । ଓଁକାରୁ ଅବ୍ୟୟ ଅଚ୍ୟୁତ ॥
ମୋ ନାମ ସଦା ଦଇତାରି । ଯାଦବ ମୁକୁନ୍ଦ ମୁରାରୀ ॥
ମାଧବ ଶ୍ରୀମଧୁସୂଦନ । ଶ୍ରୀରାମ ନନ୍ଦର ନନ୍ଦନ ॥
ରାଘବ ଗୋବିନ୍ଦ ଗୋସାଇଁ । ପରମ ପୁରୁଷ କହ୍ନାଇ ॥
ଶ୍ରୀକୃଷ୍ଣ ଦାମୋଦର ଜାଣ । ଗୋକୁଳ ଶ୍ୟାମ ନାରାୟଣ ॥
ମୁକୁନ୍ଦ ଶ୍ରୀଧର ସୁନ୍ଦର । ବଳି ବାମନ ଜମ୍ଭୁକର ॥
ଯୁଧିଷ୍ଠି କେଶବ ଶ୍ରୀପତି । ଅନନ୍ତ କପିଳ ମୂରତି ॥
ଅନନ୍ତ ଶିରୀ ଜଗନ୍ନାଥ । ମୁଁ ନନ୍ଦ ଯଦୁକୁଳ ନାଥ ॥
ଗୋପାଳ ଗଦାଧର ସିଦ୍ଧି । ଦୟାସାଗର ଦୟାନିଧି ॥
ନନ୍ଦ ସୁନନ୍ଦ ବସୁ ନନ୍ଦ । ଯଦୁ ସୁନନ୍ଦ ଆଦିକନ୍ଦ ॥
ପର୍ଶୁ ଯେ ନନ୍ଦ ସୁଲକ୍ଷଣ । ଲକ୍ଷ୍ମୀ ବିଳାସ ନାରାୟଣ ॥
ମୋ ନାମ ଅନ୍ତ କେହୁକରୁ । ଜଳଦ ନନ୍ଦ ମହାମେରୁ ॥
ଓଁ କାର ସକାର ମକାର । କଳାରୁ ଶ୍ରୀରଙ୍ଗା ଅଧର ॥
ପରମେଶ୍ୱର ସଉର୍ଦ୍ଧ୍ୱକ । କମଳ ଧବଳି ସିଦ୍ଧକ ॥
ବଳୀ ଅର୍ଜ୍ଜୁନ ବୃକୋଦର । ସୁଗ୍ରୀବ ହନୁମନ୍ତ ବୀର ॥
ବଳୀ ରାବଣ ନିସୁଦନ । ମୋ ନାମ ପତିତପାବନ ॥
ମୋ ନାମ ପାତାଳ ଆକାଶ । ସକଳ ଭୂତେ ପୀତବାସ ॥
ମୋ ନାମ ଆଦି ଶିରୀ ଖ୍ୟାତ । ଯଜ୍ଞ ରକ୍ଷଣେ ଜଗଦ୍ଭୂତ ॥
ମୋ ନାମ ଚନ୍ଦ୍ର ସୂର୍ଯ୍ୟ ଜାଣ । ଅନନ୍ତ ଅଷ୍ଟବସୁ ପୁଣ ॥
ବ୍ରହ୍ମା କୁବେର ପଶୁପତି । ଦୁଷ୍ଟ ନିବାରି ସନ୍ଥ ସ୍ଥିତି ॥
ପୁଣି ମୁଁ ସକଳ ପ୍ରକାଶ । ମୁଁ ବ୍ରହ୍ମବାଦୀ ଯୋଗୀ ବ୍ୟାସ ॥

ମୁଁ ଭାରିମଲ୍ଲ ସଦା ରିପୁ । କାମ କନ୍ଦର୍ପ ଷଡ଼ବପୁ ॥
ଏମନ୍ତେ କେତେ ନାମ କହି । ଶୁଣ ଗୋ ପ୍ରାଣ ପ୍ରିୟା ସହୀ ॥
ସର୍ବଙ୍କ ଅନନ୍ତର ପ୍ରାଣ । ମୋ ନାମ ଜାଣଇଁ ସୁଜାଣ ॥
ଶୁଣ ରୁକ୍ମିଣୀ ପ୍ରାଣସହୀ । ନାମ ଶୁଣିଲେ ଜ୍ଞାନ ହୋଇ ॥
ତୁମ୍ଭେ ଗୋ ବ୍ରହ୍ମକୁ ପାଇଲ । ସକଳ କଲ୍ମଷ ଦହିଲ ॥
ଏ ମୋର ନିତ୍ୟ ସ୍ମରଣୀୟ । ଶୁଣ ଗୋ ଭୀଷ୍ମକର ଝିଅ ॥
ରୁକ୍ମିଣୀ ବୋଇଲେ ଗୋସାଇଁ । ସକଳ ପାପ ଗଲାବହି ॥
ମୁଁ ମୂଢ଼ ହୀନ ଶିଶୁ ଦାସ । ମୋତେ ହୋ ରଖ ପୀତବାସ ॥

ଇତି ଶ୍ରୀ କଲ୍‌କୀ ଭାଗବତେ ମହାପୁରାଣେ ରୁକ୍ମିଣୀ
ବାସୁଦେବ ସମ୍ବାଦେ ନାମ ତ୍ରୟୋଦଶୋଽଧ୍ୟାୟଃ ।



## ଚତୁର୍ଦ୍ଦଶ ଅଧ୍ୟାୟ

### ରୁକ୍ମିଣୀ ଉବାଚ

ବୋଲନ୍ତି ଭୀଷ୍ମକ ତନୟା । ନାମ ଶୁଣନ୍ତେ ତୃପ୍ତ ହିୟା ॥
ତଦନ୍ତ ହୋଇ କେତେ ରାଜା । କେମନ୍ତେ ପାଳିବେ ପରଜା ॥
ମହୀରେ ତ୍ରୟ ରାଜା ହୋଇ । କେ କାହିଁ ରହିବେ ଗୋସାଇଁ ॥

### ଶ୍ରୀ ଭଗବାନୋବାଚ

ଶ୍ରୀକୃଷ୍ଣ ବୋଲନ୍ତିଗୋ ଶୁଣ । ହୋଇବେ ତିନି ରାଜା ପୁଣ ॥
ଛ'ପାଟ ଅଧେ ଭୋଗ ଯିବ । ମେଳି ମଉଡ଼ ହୋଇଥିବ ॥
ବାତରେ ପ୍ରଳୟ ସଂସାର । ଉଲକାପାତ ହିଁ ଅପାର ॥
ଘରେ ଘରେ ଗୋ ହଣା ହଣି । ଛତ୍ରକେ ତିନି ରାଜା ପୁଣି ॥
ଏମନ୍ତେ ତିନି ରାଜା ଯିବେ । ଗୋଳ ଜନ୍ମିବ ଏହି ଭବେ ॥
ଦୁଃଖରେ ପୂର୍ଣ୍ଣ ହେବ ମହୀ । ଅନେକ ଦୁଃଖ ନରେ ପାଇ ॥
ଶଏ ଆଠ ଯେ ହୋଇଯିବ । ମଘା ନକ୍ଷତ୍ର ପ୍ରବେଶିବ ॥

ଏମନ୍ତେ ରାଜା ଗଦାଧର । ଗୌତମ କୁଳେ ଅବତାର ॥
ଗିରିଜାପତି ଆଜ୍ଞା ପାଇ । ସେ ପୁଣି ବୁଲୁଥିବେ ମହୀ ॥
ପୁଣି ଗୋ ବ୍ରାହ୍ମଣ ଗୋଟାଏ । ଛତ୍ର ନଥାଏ ରାଜା ହୁଏ ॥
ସେ ରାଜା କେତେଦିନ ଥିବ । ଶ୍ରୀଜଗନ୍ନାଥଙ୍କୁ ଦେଖିବ ॥
ପ୍ରଭୁ ଶ୍ରୀମୁଖେ ଆଜ୍ଞା ଦେବେ । ଦନୁଜ ମାର ହୋ ବୋଲିବେ ॥
କଟକ ଛଳୀଯାଏ ପୁଣ । ମାରିବେ ଧୂମାନ୍ତ କରିଣ ॥
କରିଣ ତହିଁ ମହାରଣ । ମାରିବେ ଦନୁଜ ପଠାଣ ॥
ନାମ ତା ଗଦାଧର ହୋଇ । ବୁଡ଼ିବ ଚଉଦିଗ ମହୀ ॥
ମହାବୈଶାଖ ଯାଏ ପୁଣ । ମାରିବେ ଧୂମାନ୍ତ କରିଣ ॥
ରହିବ ସାରଙ୍ଗ ଗଡ଼ର । କଟକ କରିବ ସେଠାର ॥
ସୁବର୍ଣ୍ଣମୟ ପୁର ତହିଁ । ଯାଚିଣ ଦେବ ନରସାଇଁ ॥
ନୃପତି ତହୁଁ ବେଗେ ଯିବ । ଭୁବନେଶ୍ୱରଙ୍କୁ ଦେଖିବ ॥
ଠାକୁର ଆଜ୍ଞା ଦେବେ ତହିଁ । ସୁଖରେ ଭୋଗ କର ମହୀ ॥
ସହସ୍ରେ ଭାର ସ୍ୱର୍ଣ୍ଣ ତହିଁ । ରାଜାଙ୍କୁ ଦେବ ଭାବଗ୍ରାହୀ ॥
ଈଶାନେ ଛତ୍ରେକ ହୋଇବ । ଗୁପତେ ହସ୍ତୀ ରହିଥିବ ॥
ଷୋଳ ସାମନ୍ତ ସେନାପତି । ଖଟିଣ ଥିବେ ନରପତି ॥
ସମସ୍ତେ ରୁଣ୍ଡ ହୋଇ ତହିଁ । ବେଣ୍ଟ ସାଗର ପରେ ଯାଇ ॥
ସେ ସ୍ଥାନେ ନିଶ୍ଚିନ୍ତେ ରହିବେ । ଦୁଃଖୀ ଦରିଦ୍ରେ ଦାନ ଦେବେ ॥
ଯେତେକ ନର ଥିବେ ସଖୀ । ସର୍ବେ ହୋଇବେ ପୁଣ ସୁଖୀ ॥
ମୋର ଭକତ ଯେତେ ଲୋକ । ସେହି ପାଇବେ ଦିବ୍ୟ ସୁଖ ॥
ରାଜା ସକଳ ବାଣ୍ଟି ଦେବ । ଭକ୍ତଙ୍କୁ ସଙ୍ଗେ ଘେନିଥିବ ॥
ସମସ୍ତ ସୈନ୍ୟ ରୁଣ୍ଡ ହୋଇ । ନୃପତି ସଙ୍ଗେ ଥିବେ ରହି ॥
ଛତିଶ ପାଟଙ୍କ ନୃପତି । ସର୍ବେ ଗୋ ଥିବେ ତାଙ୍କ କତି ॥
ଏମନ୍ତେ କେତେ ଦିନ ଯିବ । ଶ୍ରୀଜଗନ୍ନାଥଙ୍କୁ ଦେଖିବ ॥
ପ୍ରଭୁଙ୍କ ମୁଖୁ ଆଜ୍ଞା ପାଇ । ଛତ୍ର ଧରିଣ ରାଜା ହୋଇ ॥

ଜନ ପରଜା ହେବେ ସୁଖୀ । ଦୁଷ୍ଟଙ୍କୁ ନ ରଖିବେ ସଖି ॥
ସେ ପୁଣି ବାରାଣସୀ ଯିବ । କଟକ କରିଣ ରହିବ ॥
ଚାରି କୋଶରେ ହେବ ରାଜା। ଧାର୍ମିକ ପଣେ ନାହିଁ ଦୁଜା ॥
ବତିଶ ବରଷ ପର୍ଯ୍ୟନ୍ତ । ରାଜ୍ୟ କରିବ ନୃପନାଥ ॥
ଏ ରୂପେ କିଛିଦିନ ଯିବ । ସେ ରାଜା ମୃତ୍ୟୁକୁ ଭଜିବ ॥
ପଦ୍ମ କେଶରୀ ରାଜା ତହିଁ । ଶୁଣ ରୁକ୍ମିଣୀ ମନଦେଇ ॥
ତାହାର ସତାଇଶ ମନ୍ତ୍ରୀ । ଶୁଣ ପଙ୍କଜଦଳ ନେତ୍ରୀ ॥
ମନ୍ତ୍ରୀମାନଙ୍କ ନାମ ତହିଁ । ଶୁଣ ରୁକ୍ମିଣୀ ମନଦେଇ ॥
ନକୁଳ ସହଦେବ ପାତ୍ର । ସୁଷେଣ ଆଦିମାନ ସେତ ॥
ଶ୍ୟାମ ଗୋକୁଳ ଗୋପିନାଥ । ଏହି ନାମରେ ପଞ୍ଚଭ୍ରାତ ॥
ଶିଶୁ ଦନାଇ ରାମ ଜାଣ । ଅସ୍ତମା ଭୂରିଶ୍ରବା ପୁଣ ॥
ଉତ୍ତମେ ରାଜତ୍ୱ ସେ କରି । ଭୀମ ନକୁଳ ଗଦା ଧରି ॥
କାର୍ତ୍ତିକ ଗଣପତି ହୋଇ । ପ୍ରହାସି ବାଜପେୟୀ ତହିଁ ॥
ପରମାନନ୍ଦ ପଦ୍ମନାଭ । ପରଶୁରାମ ବାସୁଦେବ ॥
ନୀଳକଣ୍ଠ ଯେ ଚକ୍ରଧାରୀ । ଭୃଗୁ କେଦାର ନୀଳଗିରି ॥
ଅଲେଖ ଅଚ୍ୟୁତ ତୁ ଜାଣ । ଏମନ୍ତେ ସତାଇଶ ପୁଣ ॥
ପଦ୍ମ କେଶରୀ ସଙ୍ଗେ ଥିବେ । ଓଡ଼ିଶା ସୁଖରେ ପାଳିବେ ॥
ଦୁଷ୍ଟଙ୍କୁ ଖୋଜିଣ ସଂହାରି । ଛେଦିବେ ଦେବୀ ମାହେଶ୍ୱରୀ ॥
କଳିଙ୍ଗ ତୈଲଙ୍ଗ ଭୂପାଳ । ଖଟିବେ ରାଜା ପାଦତଳ ॥
ଦେବତା ସୁଖରେ ପାଳିବେ । ଲକ୍ଷ୍ମୀ ଗୋ ଘରେଘରେ ଥିବେ ॥
ପଦ୍ମ କେଶରୀ ନୃପରାଣ । ମାଡ଼ି ରହିବେ ଜମ୍ବୁ କୋଣ ॥
ଧାର୍ମିକ ପୁଣି ଗୁଣବନ୍ତ । ସଙ୍ଗରେ ଅର୍ଜୁନ ସାମନ୍ତ ॥
ପ୍ରଜା ପାଳିବେ ପୁତ୍ରସମ । ହୃଦରେ ନ ବହିଣ ତମ ॥
ଶୁଣ ରୁକ୍ମିଣୀ ମନ ଦେଇ । ଏ ଭାବେ ପାଳି ନରସାଇଁ ॥
ବତିଶ ବରଷ ରହିବ । ପଦ୍ମକେଶରୀ ହତ ହେବ ॥

ଏମନ୍ତେ ସତୁରି ବରଷ । ତଦନ୍ତେ ନୃସିଂହ ପ୍ରକାଶ ॥
ଆଠ ବରଷ ରାଜା ହୋଇ । ତାର ମହିମା ଦେବା କହି ॥
ସେ ରାଜା ଏମନ୍ତେ ହୋଇବ । ଅଦୋଷେ ପ୍ରାଣୀଙ୍କି ଦଣ୍ଡିବ ॥
ରୁକ୍ମିଣୀ ବୋଲନ୍ତି ଗୋସାଇଁ । ପୁଣ ଏମନ୍ତ କାହିଁପାଇଁ ॥
ଶ୍ରୀକୃଷ୍ଣ ବୋଲନ୍ତି ରୁକ୍ମିଣୀ । ପୂର୍ବର ଅଛଇ କାହାଣୀ ॥
ପ୍ରଳମ୍ବା ବୋଲିଣ ଦନୁଜ । କଂସର ଅଟଇ ଅନୁଜ ॥
ମଥୁରା ନଗରେ ସେ ରାଜା । ମୁଁ ଅଟେ ତାହାର ଭଣଜା ॥
ରୋହିଣୀ ଗର୍ଭେ ବଳରାମ । ପ୍ରଥମେ ହୋଇଲେ ଜନମ ॥
ପ୍ରଳମ୍ବା ଜାଣିଣ ଅଇଲା । ରାମର ଚରଣ ଧଇଲା ॥
ନେଇଣ ଶିଳାରେ କଚାଡ଼ି । ପବନେ ଗଲେ ହଳୀ ଉଡ଼ି ॥
ଅଦୋଷେ ବାଳକକୁ ମାରି । ଜାଣି କମ୍ପିଲେ ହଳଧାରୀ ॥
ମୋହର ଶାପ ତୋତେ ଦେଉ । ତିନି ବ୍ରହ୍ମାଣ୍ଡେ ଆନ ନୋହୁ ॥
ଆମ୍ଭେଟି ଅବ୍ୟୟ ଅଚ୍ୟୁତ । ପ୍ରାଣ ତୁ ଛାଡ଼ରେ ଦଇତ ॥
ପିଶାଚ ହୋଇ ରହିଥିବୁ । କଳି ଯୁଗରେ ଜାତ ହେବୁ ॥
ନୃପତି ପଦ୍ମ କେଶରୀର । ତୁ ଯାଇ ହୋଇବୁ କୁମର ॥
ଅଷ୍ଟ ବରଷ ରାଜା ହୋଇ । ଯହୁଁ ତୁ ମୋତେ ଅଛୁ ଧ୍ୟାୟି ॥
କଳି ଯୁଗତେ ହୁଅ ରାଜା । ଅଦୋଷେ ଦଣ୍ଡିବୁ ପରଜା ॥
ତହିଁ ତୁ ଦୁଷ୍ଟ ହୋଇଥିବୁ । ପ୍ରଜାଙ୍କୁ ଦଗଧି ମାରିବୁ ॥
ବସୁଧା ଭାରା ନ ସହିବ । ଆମ୍ଭଙ୍କୁ ଗୁହାରି କରିବ ॥
ଆମ୍ଭେ ଜନମ ଲଭି ତହିଁ । ଅନନ୍ତ ରୂପେ ଭାବଗ୍ରାହୀ ॥
ତହିଁ ହୋଇବୁ ପ୍ରାଣେ ନାଶ । ପାପ ତୋ ଯିବ ସ୍ୱର୍ଗେ ବାସ ॥
ଶୁଣ ରୁକ୍ମିଣୀ ପ୍ରାଣ ସହି । ପୂର୍ବର ହେତୁ ଦେଲୁ କହି ॥
ଅନନ୍ତେ ଅନନ୍ତ କେଶରୀ । ମାନବ କୁଳେ ଅବତରି ॥
ଅନନ୍ତ କେଶରୀ ନୃପତି । ସଂସାରେ ବିରହିବେ ରତି ॥
ଭକତ ଘେନି ଭାବଗ୍ରାହୀ । ଖେଳିବେ ତ୍ରୈଲୋକ୍ୟ ଗୋସାଇଁ ॥

ବଉଦ୍ଧ ଉଦୟ ହୋଇବ । ଅନନ୍ତ ସଙ୍ଗେ ଖେଳୁଥିବ ॥
ମୋ ନାମ ଗାଉଥିବେ ପୁଣ । ଏମନ୍ତେ ଖେଳେ ନାରାୟଣ ॥
ଶମ୍ଭୁ ଦେବତା ପୂଜା ପାଇ । ଇନ୍ଦ୍ର ଉତ୍ସବ ଯାତ୍ରା ହୋଇ ॥
ନୀଳ କନ୍ଦର ଯାଜପୁର । ନିର୍ମାଲ୍ୟ ହେଉଥିବ ଯୁର ॥
ଯାଦବ ବଉଦ୍ଧ ରୂପରେ । ଖେଳିବେ ଅନନ୍ତ ସଙ୍ଗରେ ॥
ସୁବର୍ଣ୍ଣ ଅଟ୍ଟାଳି ଜଗତି । ଘର ବସିବ ଚଉକତି ॥
ଆପଣେ ବିଶ୍ୱକର୍ମା ଯାଇ । ନିର୍ମାଣ କରିବେ ଗୋ ସେହି ॥
କୁବେର ଦେବ ଅଳଙ୍କାର । ଖଟିଣ ଥିବେ ନିରନ୍ତର ॥
ଲକ୍ଷ୍ମୀଗୋ ଘରେ ଘରେ ଥିବେ । ଦେବତା ସୁଖେଣ ପାଳିବେ ॥
ସବୁରି ଘରେ ପିଠା ପଣା । କରିବେ ଆପଣା ଆପଣା ॥
ସହସ୍ରେ ବରଷ ଆୟୁଷ । ବ୍ରହ୍ମା ଗୋ ହୋଇବେ ପ୍ରକାଶ ॥
ବୃଦ୍ଧ ବାଳକ ଏକସରି । ଦେଖିବେ ପ୍ରଭୁ ଚକ୍ରଧାରୀ ॥
ଭକତ ପୂର୍ବଦିଗେ ସହି । ମଠ କରିଣ ସୁଖେ ରହି ॥
ଏମନ୍ତେ ଭକତିର ଲୀଳା । ଦେଖି ଭକତ ହେବେ ଭୋଳା ॥
ମୁଢ଼ ଏ ଶିଶୁଦାସ କହି । ପାଦପଦ୍ମରେ ଧ୍ୟାନ ଥୋଇ ॥

ଇତି ଶ୍ରୀ କଲ୍‌କୀ ଭାଗବତେ ମହାପୁରାଣେ ରୁକ୍ମିଣୀ
ବାସୁଦେବ ସମ୍ବାଦେ ନାମ ଚତୁର୍ଦ୍ଦଶୋଽଧ୍ୟାୟଃ ।

## ପଞ୍ଚଦଶ ଅଧ୍ୟାୟ

### ରୁକ୍ମିଣୀ ଉବାଚ

ରୁକ୍ମିଣୀ ବୋଲନ୍ତି ଭୋ ନାଥ । ମୋତେ କହିଲ ଜ୍ଞାନତତ୍ତ୍ୱ ॥
ମୁଁ ଏବେ ପଚାରଇ ହରି । କଥାଏ କହି କର ପାରି ॥
ରାଜାଏ ବଳେ ଦଣ୍ଡ ଦେଲା । ସେ ପ୍ରାଣୀ କାହାରି ନୋହିଲା ॥
କୁଟୁମ୍ବଯାକ ଦୁଃଖ ତାର । ସମସ୍ତେ କରନ୍ତି ବିହାର ॥

ସେ ପୁଣି କେଉଁ ଗତି ପାଇ । ଏ କଥା କହ ଭାବଗ୍ରାହୀ ॥
ଶ୍ରୀହରି ବୋଲନ୍ତି ରୁକ୍ମିଣୀ । କହଇ ଶୁଣ ତାଙ୍କ ବାଣୀ ॥
ଯେଣୁ ସେ ମୋତେ ସୁମରଇ । ହରି ଗୋବିନ୍ଦ ନାମ ଗାଇ ॥
ତାହାର ମନ ଆମ୍ଭେ ଜାଣି । ତକ୍ଷଣେ କୃପା କରୁ ପୁଣି ॥
ତାହାକୁ ଜଗତ ଛାଡ଼ିଲେ । ମୁଁ ତାକୁ ଘେନିଥାଇ ଭଲେ ॥
ସେ ମୋତେ ଦୁଃଖେ ଖୋଜୁଥାଇ । ଅଳପେ କଷ୍ଟ ତାର ଯାଇ ॥
ମୁଁ ଯେବେ ଛାଡ଼ିବି ନିକର । ସେ ପ୍ରାଣୀ ଯାଏ ଯମପୁର ॥
ଚୋର ସେରନ୍ତା ମୁହିଁ ଜାଣ । ମୁଁ ସର୍ବଭୂତେ ନାରାୟଣ ॥
ମୋତେ ଯେ ହୃଦରେ ଭାବିବ । ଯେ ମୋର ନାମ ଗାଉଥିବ ॥
ଏମନ୍ତ ଭାବେ ଅବତରି । ଶୁଣ ଗୋ ରୁକ୍ମିଣୀ ସୁନ୍ଦରୀ ॥

## ରୁକ୍ମିଣୀ ଉବାଚ

କହନ୍ତି ଭୀଷ୍ମକ ନନ୍ଦିନୀ । ମଦନ ତାତ ଶୁଣ ପୁଣି ॥
ଭକତେ ଗାଆନ୍ତି ତୋ ନାମ । କିମ୍ପା ନ ମିଳେ ତାଙ୍କୁ ଅନ୍ନ ॥
ତହିଁରେ କିସ ଗୁଣ ଅଛି । ଫେଡ଼ି ତା କହ ଶିରୀପତି ॥
ତୁମ୍ଭେ ତ ବଡ଼ ପ୍ରଭୁ ଅଟ । ସେ କିମ୍ପା ପାନ୍ତି ଅନ୍ନକଷ୍ଟ ॥

## ଶ୍ରୀ ବାସୁଦେବୋବାଚ

ଶ୍ରୀହରି ବୋଲନ୍ତି ଗୋ ସହି । ତହିଁର ସନ୍ଧି ଦେବା କହି ॥
ଦୁଃଖରେ ଜ୍ଞାନ ତହିଁ ଅଛି । ଈଶ୍ୱର ସମ୍ପଦ ଦେଉଛି ॥
ତେଣୁ ତାହାର ଦୁଃଖ ନାହିଁ । ମୋ ନାମେ ଧନାଢ଼୍ୟ ସେ ହୋଇ ॥
ଯେ ମୋର ଭକ୍ତ ସତ ମିତ । ମୋ ନାମ ତାକୁ କୋଟିବିତ୍ତ ॥
ଧନରେ ଆଶା ନ କରଇ । ସମ୍ପଦ ତୁଚ୍ଛ ସେ ମଣଇ ॥
ଭକ୍ତ ମୋ ପାଇଁ ସୁଖୀ ହୋଇ । ମୁକତି ଗତି ତାକୁ ଦେଇ ॥
ଶୁଣ ଗୋ ଭକ୍ତ ଦିବ୍ୟବାଣୀ । ହସି କହନ୍ତି ଚକ୍ରପାଣି ॥
ଯେ ସ୍ଥାନେ ଭକ୍ତ ମୋର ଥାଇ । ସେ ସ୍ଥାନେ ସମସ୍ତ ମିଳଇ ॥
ସଂସାରେ ଯେତେ ଗୃହୀଜନ । ଖଟନ୍ତି ଭକତ ଚରଣ ॥

ତେଣୁ ସେ ମହାସୁଖୀ ହୋଇ। ମୁକତି ଗତି ତାକୁ ଦେଇ ॥
ଭକତ ମହିମା ଯେମନ୍ତ । ବ୍ରହ୍ମା ଗୋ ନ ଜାଣେ ତେମନ୍ତ ॥

## ରୁକ୍ମିଣୀ ଉବାଚ

ରୁକ୍ମିଣୀ ବୋଲନ୍ତି ଗୋସାଇଁ । ଅତି ରହସ୍ୟ ଶୁଣିଲଇଁ ॥
କେମନ୍ତେ ସଂସାରେ ଭକତି । ଫେଡ଼ି କହିବା ଜଗଜ୍ୟୋତି ॥
ଜଳ ବରଷେ ମେଘ ଜାଣି । ପବନ ଦିଗପାଳ ଘେନି ॥
ଯମ ନୈରତ ଯେ ଗନ୍ଧର୍ବ । ବ୍ରହ୍ମା ଈଶ୍ୱର ବାସୁଦେବ ॥
ଏମାନେ ପାଳନ୍ତି ସଂସାର । କିମ୍ପାଇଁ ଦୁଃଖୀ ସୁଖୀ ନର ॥
ଦଶ ମାସରେ ଗର୍ଭୁ ଜାତ । କିମ୍ପାଇଁ ନୋହିଲେ ଭକତ ॥
କେ ଭୁଞ୍ଜେ ଦିବ୍ୟ ଶାଳିଅନ୍ନ । ମନରେ ଜନମିଲା ଭ୍ରମ ॥
ସେକଥା ହେଲା ମୋତେ ଗୁରୁ। ଫେଡ଼ିଣ କହ କଳ୍ପତରୁ ॥

## ଶ୍ରୀଭଗବାନୋବାଚ

ପ୍ରଭୁ ବୋଲନ୍ତି ପ୍ରିୟେ ଶୁଣ । ଏ ମାୟା ଅନାଦି ଭିଆଣ ॥
ସକଳ ଜୀବେ କର୍ତ୍ତା ସେହି । ତାଙ୍କୁ ନ ଥିବା ସ୍ଥାନ ନାହିଁ ॥
ବ୍ରହ୍ମାଣ୍ଡେ ଛନ୍ତି ଯେତେ ରାଜା। ସମସ୍ତେ ମୋହର ପରଜା ॥
ଷୋଳ ସାମନ୍ତ ସେନାପତି । ସେ ସ୍ଥାନେ ଯେତେକ ବିଭୂତି ॥
ଏମାନେ ମୋହର କଳାରେ । ଭୋଗ କରନ୍ତି ସ୍ୱର୍ଗପୁରେ ॥
ଭୋଗ ଭୁଞ୍ଜନ୍ତି ସୁଖ ପାଇ । ଲକ୍ଷ୍ମୀ ତାହାଙ୍କୁ ଖଟିଥାଇ ॥
ସେ ଜନ ଭକ୍ତ ମୋହଠାର । ଦୟା କରଇ ନିରନ୍ତର ॥
ତାହାର ପୂର୍ବର କାହାଣୀ । କହିଲେ ନ ସରଇ ପୁଣି ॥
ସେ ବଡ଼ କୁଳେ ଜାତ ହୋଇ। ଅନ୍ତରେ ପରକୁ ଛନ୍ଦଇ ॥
ଯେତେକ ସଞ୍ଚିଥାଇ ଧନ । ପିତା ପାଣିରେ ନେଇ ଦିନ ॥
ଆମ୍ଭଙ୍କୁ ଦଗଧି ମାରଇ । ସୁସ୍ୱାଦୁ ପଦାର୍ଥ ନ ଖାଇ ॥
ଅତିଥି ଉପସ୍ଥିତ ଦେଖି । ନିରାଟେ ତରାଟଇ ଆଖି ॥
ଦେବତା ବ୍ରାହ୍ମଣେ ନିରାଶ । ପରକୁ ବହିଥାଇ ରୋଷ ॥

ମାତା ପିତାଙ୍କୁ ରୋଷ କରି । ବିଅର୍ଥେ ପୋଷୁଥାଇ ମାରି ॥
ଏମନ୍ତେ ପୂର୍ବ ଜନ୍ମକଥା । ସେ ପ୍ରାଣୀ ପାଆନ୍ତି ଅବସ୍ଥା ॥
ତାହାକୁ ଦୁଃଖ ସୁଖ ଭାବ । କହନ୍ତି ପ୍ରଭୁ ପଦ୍ମନାଭ ॥
ଦୁଃଖକୁ ସୁଖ ମନେ କରି । ଏ କଥା ନିର୍ଣ୍ଣୟ ନ କରି ॥

## ରୁକ୍ମିଣୀ ଉବାଚ

ରୁକ୍ମିଣୀ ବୋଲନ୍ତି ହୋ କାହ୍ନୁ । ଶୁଣିଲି ଅମୃତ ବଚନୁ ॥
ମୋର ଜୀବନ ଅଟେ ଧନ୍ୟ । ପୂର୍ବେ ମୋହର ଅଛି ପୁଣ୍ୟ ॥
ଏବେ ଯେ ପଚାରଇ ମୁହିଁ । କହ କମଳା ପ୍ରାଣସହୀ ॥
ଅନନ୍ତ ରାଜା ମହୀଧର । ଦେବତା ଖଟିବେ ପୟର ॥
ତିରିଶ ନକ୍ଷତ୍ର ଗୋସାଇଁ । ଆଠ ଯେ ବାର ସରି ହୋଇ ॥
ବାର ମାସର ନାମ କହ । ଶୁଣି ଫିଟିବ ମୋ ସନ୍ଦେହ ॥
ଅନନ୍ତ ବ୍ରହ୍ମାଣ୍ଡ ଉଦୟେ । ଛପନ ଜୀବ ସୁଖୀ ହୁଏ ॥
ସଂସାରେ ସୁଖ ଆମୋଦିବ । ମୋତେ ଏ ସନ୍ଦେହ ହୋଇବ ॥
ମାସ ଏ ସନ୍ଦେହ ହୋଇଲା । ସନ୍ଦେହ ଆବର ପୁଛିଲା ॥
ନକ୍ଷତ୍ର ସତାଇଶ ଜାଣ । ବଞ୍ଚିବା ତିଥି ନାମ ପୁଣ ॥
କେମନ୍ତେ ଆଠ ବାର ହୋଇ । କହିବା ତ୍ରୈଲୋକ୍ୟ ଗୋସାଇଁ ॥

## ଶ୍ରୀ ଭଗବାନୋବାଚ

ଶ୍ରୀକୃଷ୍ଣ ବୋଲନ୍ତି ଗୋ ସହି । ଅତି ଗୁପତ କଥା ଏହି ॥
କଳିରେ ଗୁପତ ବୋଇବ । ସତ୍ୟ ଧର୍ମ ଯେ ଲୁଚିଯିବ ॥
ଅବନା ଆଠୋଟି ଅକ୍ଷର । ପଅ ଅକ୍ଷର ରବିବାର ॥
ରଅ ଅକ୍ଷରେ ସୋମ ହୋଇ । ଭଅଟି ମଙ୍ଗଳ ବୋଲାଇ ॥
ଜଅ ଅକ୍ଷର ବୁଧବାର । ସଅଟି ସର୍ବ ଗୁରୁଙ୍କର ॥
ଶଅ ଯେ ଶୁକ୍ର ନାମ ପୁଣ । ଶୁଣ ରୁକ୍ମିଣୀ ତହିଁ ଗୁଣ ॥
ବଅକୁ ଶନି ବୋଲି କହି । ଦଅଟି ଗୁପତେ ଅଛଇ ॥
ଦାସ ବତ୍ସଳ ଦାମୋଦର । ଅନନ୍ତ ବାର ମହୀଧର ॥

ଏମନ୍ତେ ଆଠବାର ସରି । ଶୁଣ ରୁକ୍ମିଣୀ ମନୋହାରୀ ॥
ବାର ଗୋ ସରି ଏହି ମତେ । କହିବୁ ମାସ ଶୁଦ୍ଧ ଚିତ୍ତେ ॥
ପ୍ରଥମ ନାମ ମାର୍ଗଶୀର । ଶ୍ରୀଜଗନ୍ନାଥଙ୍କ ପୟର ॥
ପୌଷ ଯେ ବଳଭଦ୍ର ରୂପ । ମକର ରାଧିକା ସଂଯୁକ୍ତ ॥
ଫାଲ୍‌ଗୁନ ଚନ୍ଦ୍ରାବଳୀ ନାମ । ଚଇତ୍ର ନାମ ଗଉତମ ॥
ବୈଶାଖ ମାସ ବୃନ୍ଦାବତୀ । ଶୁଣ ଗୋ ଭୀଷ୍ମକ ସନ୍ତତି ॥
ଜ୍ୟେଷ୍ଠ ଯେ ସତ୍ୟଭାମା ନାମ । ଆଷାଢ଼ ଶାରଦା ଉତ୍ତମ ॥
ଶ୍ରାବଣ ପ୍ରେମ୍ନରୂପା ହୋଇ । ଭାଦ୍ରବ ମାସ ବିମଳାଇ ॥
ଆଶ୍ୱିନ କୁନ୍ତଳା ପ୍ରମାଣ । ଶୁଣ ରୁକ୍ମିଣୀ ପ୍ରାଣଧନ ॥
ଆମ୍ଭେ ଗୋ ଦେଖୁଥିବା ରହି । ଧର୍ମ କରିବେ ଚାଟକାଇ ॥
ଶୂନ୍ୟେ ଡାକିବ ଦେବବାଣୀ । ଦନୁଜ ମୋର ଯୋଷାମଣି ॥
ଦେବତାମାନଙ୍କ ଆକୁଳ । ଆମ୍ଭେ ଗୋ ହୋଇବୁ ବିକଳ ॥
ଆମ୍ଭ ଆଜ୍ଞାରେ ହନୁମନ୍ତ । ଶୂନ୍ୟେଣ ଜମ୍ବୁବାଳୀ ସୁତ ॥
ହରି ଚନ୍ଦନ ପଣନାତି । ଆବର ସହଦେବ ମନ୍ତ୍ରୀ ॥
ଅର୍ଜୁନ ତୁଳେ ତେର ଜଣ । କାର୍ତ୍ତିକେ ଲକ୍ଷ୍ମୀନାରାୟଣ ॥
ଏମନ୍ତେ ବାର ମାସ ହୋଇ । ଶୁଣିଲୁଟିକି ପ୍ରାଣ ସହି ॥
ଷଡ଼ ଗୋରୀକୁ ଚାରିସଖୀ । ଶୁଣ ଧବଳୀ ଚନ୍ଦ୍ରମୁଖୀ ॥
ଋତୁ ଯେ ଶ୍ରୀକୃଷ୍ଣ ରୁକ୍ମିଣୀ । ସେହୁ ବରଷେ ସଙ୍ଗାତୁଣୀ ॥
ଆବର ଚାରି ଋତୁ ଯେହୁ । କାମ କ୍ରୋଧରେ ଜନ୍ମ ଏହୁ ॥
ସେ ଯେ ଅଟନ୍ତି ଚାରି ସଖୀ । ତ୍ରିଗୁଣ ପରେ ଅଛୁ ରଖି ॥
ଯୁଗ ହୁଅଇ ଯେବେ ଶେଷ । ଏମାନେ ହୁଅନ୍ତି ପ୍ରକାଶ ॥

## ରୁକ୍ମିଣୀ ଉବାଚ

ରୁକ୍ମିଣୀ ବୋଲନ୍ତି ଗୋସାଇଁ । ଅତି ରହସ୍ୟ ଦେଲ କହି ॥
ଶୁଣି ମୁଁ ହୋଇଲି ମୁକତ । କଥାଏ କହ ଜଗନ୍ନାଥ ॥
କଳକୀ ରୂପର ମହିମା । କହ ଶ୍ରୀପୁରୁଷ ଉତ୍ତମା ॥

କେମନ୍ତ ତେଜ ତୁମ୍ଭ ତହିଁ । ଦେଖିବି ତ୍ରୈଲୋକ୍ୟଗୋସାଇଁ ॥

### ଶ୍ରୀ ଭଗବାନୋବାଚ

ଶ୍ରୀକୃଷ୍ଣ ବୋଲନ୍ତିଗୋ ଶୁଣ । କଳକୀ ରୂପ ନାରାୟଣ ॥
ଏମନ୍ତେ ବରଷ ଏଗାର । ଅବନୀ ହୋଇବ କାତର ॥
ତେଣୁ ହୋଇବ ଘୋର କଳି । କରଣ ରାଉତଙ୍କ ମେଳି ॥
ଏ କଥା ହୋଇବ ଅବଶ୍ୟ । ତଦନ୍ତ ଅନନ୍ତ ପ୍ରକାଶ ॥
କେଶରୀ ଗଦାଧର ସେହି । ଗୌତମ ନାମ ସେ ବୋଲାଇ ॥
ଏମନ୍ତ ମହିମା ରାଜାର । ପୂଜିବେ ଶୂନ୍ୟରେ ଅମର ॥
ଦୁଷ୍ଟଙ୍କୁ ହେଲେ ସଂହାରିବୁ । କଳକୀ ରାଉତ ହୋଇବୁ ॥
ଶ୍ୱେତ କାଳିଆ ଅଶ୍ୱ ପୁଣ । ଚଢ଼ି ହାଣିବୁ ସୁଦର୍ଶନ ॥
ଦୁଷ୍ଟଙ୍କୁ ନ ଥୋଇବୁ କାହିଁ । ଶୁଣ ରୁକ୍ମିଣୀ ପ୍ରାଣସହୀ ॥

### ରୁକ୍ମିଣୀ ଉବାଚ

ରୁକ୍ମିଣୀ ବୋଇଲେ ଭୋନାଥ । ମୋତେ ଏ ଅଗୋଚର ପଥ ॥
ମୁଁ ଯାହା ପୁଛିଲି ମୁରାରୀ । ମୋତେତ ମାୟା କଲ ହରି ॥
କଳଙ୍କୀ ରୂପ ମୋତେ ଦେଖା । ଯେବେ ମୁଁ ତୁମ୍ଭ ପ୍ରାଣସଖା ॥
ଏମନ୍ତେ ପାଦେ ପଡ଼ି ଶୋଇ । ତୋଳି ଧଇଲେ ଭାବଗ୍ରାହୀ ॥
ହୀନ ଯେ ମୂଢ଼ ଶିଶୁଦାସ । ଭକତେ କରଇ ବିଶ୍ୱାସ ॥

ଇତି ଶ୍ରୀ କଲ୍‌କୀ ଭାଗବତେ ମହାପୁରାଣେ ରୁକ୍ମିଣୀ
ବାସୁଦେବ ସମ୍ବାଦେ ନାମ ପଞ୍ଚଦଶୋଽଧ୍ୟାୟଃ ।



## ଷୋଡ଼ଶ ଅଧ୍ୟାୟ

### ଶ୍ରୀ ବାସୁଦେବୋବାଚ

ରୁକ୍ମିଣୀ ବଚନେ ଶ୍ରୀହରି । କହନ୍ତି ତାଙ୍କୁ ଦୃଢ଼କରି ॥
ତୁମ୍ଭେ ଗୋ ଦେଖିବ ସ୍ୱରୂପ । କଳକୀ ଆଦି ବ୍ରହ୍ମରୂପ ॥

ଭୟ ଗୋ ପାଇବ ସହୀ । ଏ ରୂପ କେହି ଦେଖି ନାହିଁ ॥
ଏମନ୍ତ କହି ଦାମୋଦର । ମାୟା ରଚିଲେ ଚକ୍ରଧର ॥
ବୋଲନ୍ତି ଜଗତ ଈଶ୍ୱର । ଦେଖ ଗୋ ବିଶ୍ୱରୂପ ମୋର ॥
ବେନି ଭୁଜରେ ବେନି ଖଣ୍ଡା । ପ୍ରସନ୍ନ ମୁଖ ପରଚଣ୍ଡା ॥
ଆକାଶେ କ୍ଷେପି ଅଶ୍ୱ ରହି । ଗଗନେ ଶିର ତା ଲାଗଇ ॥
ଦୁଇ ଟାପୁରେ ବସୁନ୍ଧରୀ । ରହିଲା ଆକାଶ ଆବୋରି ॥
ମେଘ ଗର୍ଜନ ଭୟଙ୍କର । ଘୋଟିଲା ସପତ ସାଗର ॥
ଶଙ୍ଖ ଯେ ଚକ୍ର କରେ ଖଣ୍ଡା । ଆୟୁଧ ତେଜ ପରଚଣ୍ଡା ॥
ଆକାଶେ କ୍ଷେପି ଅଶ୍ୱ ରହି । ହୁଂକାର ଗରଜନ ଦେଇ ॥
ଏମନ୍ତ ବିଶ୍ୱ କଳେବର । ପୂରିଲା ଜଗତ ଭିତର ॥
ରୋମକେ ବସୁମତୀ ରହେ । ଦିଶଇ ତିଳ -ରୂପା ପ୍ରାୟେ ॥
ଏ ରୂପେ ପୂରିଲା ଜଗତ । ଭକତ ବନ୍ଧୁ ଜଗଦ୍ଭୂତ ॥
ଦେବତାମାନେ ଭୟ କରି । ସ୍ୱର୍ଗରୁ ପଳାଇଲେ ଡରି ॥
ଫୁ ଫୁ ଗର୍ଜନ ଭୟଙ୍କର । ଶୁଣି କମ୍ପନ୍ତି ତିନିପୁର ॥
ସଂସାରେ ଉତପାତ ହୋଇ । ଶବଦେ ସିନ୍ଧୁ ଉଚ୍ଛୁଳଇ ॥
ବ୍ରହ୍ମା ଶଙ୍କର ଥରହର । ଇନ୍ଦ୍ରର କମ୍ପଇ ଶରୀର ॥
ଭୟ କରିଣ ଦେବଗଣ । ବସିଣ ବିଚାରନ୍ତି ପୁଣ ॥
ପ୍ରଭୁ କି ଆନ ଯୁଗ କଲେ । ଏମନ୍ତ ପରାୟେ ମଣିଲେ ॥
ଏକାନ୍ତେ ସର୍ବ ଦେବ ମିଳି । ମୋ ମାୟା ନ ପାରିଲେ କଳି ॥
ଯେ ପ୍ରଭୁ ସର୍ବ ଜୀବକର୍ତ୍ତା । ତାହାର କାହିଁପାଇଁ ଚିନ୍ତା ॥
ରୁକ୍ମିଣୀ ଦେବୀ ଭୟ ପାଇ । କାର୍ପଣ୍ୟେ ସ୍ତୁତିକଲେ ଚାହିଁ ॥
ଜୟ ତୁ ଜୟ ଜଗବନ୍ଧୁ । ଭକ୍ତ ମୋହର କୃପାସିନ୍ଧୁ ॥
ବାରେ ଉଦ୍ଧାର ଜଗନ୍ନାଥ । ଭୟ ପାଇଲା ମୋର ଚିତ୍ତ ॥
ତୁମ୍ଭର କଳକୀ ରୂପରେ । ଚଉଦ ଭୁବନ ଲୁଚିଲେ ॥

ଏ ଅଶ୍ୱ ଟାପୁ ତୀକ୍ଷ୍ଣ ଶର । ଦେବ ନରଙ୍କୁ କଲା ଚୂର ॥
ଏ ରୂପ ଦେଖି ଭୟ ପାଇ । ଯୋଦ୍ଧାଏ ନ ପାରିଲେ ରହି ॥
ତୁମ୍ଭେ କି ଯମ କାଳଫାଶି । ଗଭୀରେ ଧରିଅଛ ଆସି ॥
ଦେଖି କମ୍ପିଲା ମୋର ଦେହୀ । ବାରେକ ମୋତେ କର ତ୍ରାହି ॥
କୁହୁକ ବର୍ଣ୍ଣ ପ୍ରାୟେ ଦିଶି । ମୁଁ ତୁମ୍ଭ ଶ୍ରୀଚରଣେ ଦାସୀ ॥
ମୋତେ ଉଦ୍ଧର ଚକ୍ରଧର । ବୋଲିଣ ଶୋଇଲେ ପୟର ॥
ବୋଇଲେ ଦେବ ଚକ୍ରଧାରୀ । ଉଠ ଗୋ ଭୀଷ୍ମକ- କୁମାରୀ ॥
ମୋ ମାୟା ନ ଜାଣନ୍ତି କେହି । ଅଶେଷ ପୂରିଅଛି ମହୀ ॥
ଏବେ ତୁ ଛାଡ଼ ମନ ତାପ । ଦେଖ ଗୋ ଅନାଦି ସ୍ୱରୂପ ॥
ଏତେକ କହି ଭାବଗ୍ରାହୀ । ସେ ରୂପ ଛାଡ଼ିଲେ କହ୍ନାଇ ॥
ତାହାଙ୍କୁ ଧଇଲେ କୋଳର । ହସିଣ ବରଜ ସୁନ୍ଦର ॥
ଦେଖିଲିଟି କି ପ୍ରାଣସହୀ । ଆମ୍ଭର କଳ୍କୀ ରୂପ ଏହି ॥
ଆମ୍ଭେଟି ସଂସାରର କର୍ତ୍ତା । ବେଦ ଯେ ସଂସାରର ପିତା ॥

## ରୁକ୍ମିଣୀ ଉବାଚ

ରୁକ୍ମିଣୀ ବୋଲନ୍ତି ଗୋସାଇଁ । କେହି ତ ଚିର ହୋଇ ନାହିଁ ॥
ଏକଥା ହେଲା ମୋତେ ଗରୁ । ଫେଡ଼ି କହିବା କଳ୍ପତରୁ ॥
ତୁମ୍ଭଙ୍କୁ ଯେହୁ ସେବିଥାଇ । କିମ୍ପାଇଁ ମରଇ ଗୋସାଇଁ ॥
ଦୁଷ୍କର ହୁଅଇ ମରଣ । କେବା ପାଆନ୍ତି ପରିତ୍ରାଣ ॥
ଜନ୍ମିଲା ସନ୍ଦେହ ମନର । ଫେଡ଼ିଣ କହ ଚକ୍ରଧର ॥
କପଟ ନ କର ତୁ ମୋତେ । କେ ଏଥୁ ତରନ୍ତି ଯୁକତେ ॥

## ଶ୍ରୀ ଭଗବାନୋବାଚ

ଶ୍ରୀକୃଷ୍ଣ ବୋଲନ୍ତି ରୁକ୍ମିଣୀ । କହିବା ତ୍ରୟ ତତ୍ତ୍ୱ ବାଣୀ ॥
ଯେ ଜୀବ ଏକ ତତ୍ତ୍ୱ ଜାଣ । ମଲେ ଜନ୍ମଇ ପୁନଃ ପୁନଃ ॥
ମୁଁ ସର୍ବ ଜ୍ୟୋତିରେ ପ୍ରକାଶ । ଫୁଟିଣ ଆମୋଦଇ ବାସ ॥

ତେଜର ତହିଁ ତେଜ ବାସ । ସଛ ଯେ ମୋ ଦେହ ପ୍ରକାଶ ॥
ଏମନ୍ତ ପ୍ରକାରେ ଗୋ ମୁହିଁ । ସକଳଭୂତେ ଅଛି ରହି ॥
ଏ କିମ୍ପା ପାଇବେ ମରଣ । ହେତୁକୁ ଚଇତନ ଜାଣ ॥
ମନକୁ ଚେତନ ଧରିବ । ଜ୍ୟୋତିକି ଦର୍ଶନ କରିବ ॥
ଯେ ଆତ୍ମା ଦଗ୍‌ଧ କରନ୍ତି । ନିଶ୍ଚେ ମରଣ ସେହୁ ପାନ୍ତି ॥
ଆତ୍ମଙ୍କୁ ପୁଜେ ଯେଉଁ ନର । ଅମର ତାହାର ଶରୀର ॥
କୋଟିଏ ଯଜ୍ଞଫଳ ଯେତେ । ଆତ୍ମା ଚିହ୍ନିଲେ ଫଳ ତେତେ ॥
ଏ ଜୀବ ପୂଜ ମନ ଦେଇ । ଆତ୍ମାକୁ ଧାୟି ହୃଦେ ଲାଇ ॥
ଷଡ଼ ପ୍ରକାରେ ତହିଁ ପୂଜା । ଯେ ଯାହା ଆତ୍ମା ତହିଁ ରାଜା ॥
ଏମନ୍ତ ବୋଧି ଯେହୁ ରହି । ଅମର ବୋଲି ତାକୁ କହି ॥
ଆତ୍ମା ଯେ ପୂଜେ ବେଳ ଜାଣ । ସେ ନର ସ୍ୱୟଂ ଚକ୍ରପାଣି ॥
ଜୀବକୁ ନ କର ସଂହାର । ପରମବ୍ରହ୍ମ ଅବତାର ॥
ଏ ଭାବେ ସର୍ବ ଜୀବ ସରି । ମୁଁ ସର୍ବ ଜୀବ ଠାବେ ପୂରି ॥

## ରୁକ୍ମିଣୀ ଉବାଚ

ରୁକ୍ମଣୀ ବୋଲନ୍ତି ଭୋ ନାଥ । ମୋତେ ତ ଅଗୋଚର ପଥ ॥
କି ଭାବେ ବ୍ରହ୍ମ ଅଛି ରହି । ଫେଡ଼ିଣ କହ ଭାବଗ୍ରାହୀ ॥
ପ୍ରିୟାକୁ କହନ୍ତି ଶ୍ରୀହରି । ବ୍ରହ୍ମକୁ ଅଛୁ ଗୁପ୍ତ କରି ॥
ଯେବେଗୋ ଦେଖାଇବା ତୋତେ । ଭୋ ପ୍ରିୟା ଶୁଣ ଏକ ଚିତ୍ତେ ॥
ଗଙ୍ଗାକୁ ବିଷ୍ଣୁ ବୋଲି କହି । ତହିଁରୁ ଅନ୍ନ ଜାତ ମହୀ ॥
ସେ ଅନ୍ନ ଦାନ ଯେହୁ ଦେଇ । ନିଶ୍ଚୟ ବ୍ରହ୍ମା ସେ ଦେଖଇ ॥
କୋଟିଏ ତୀର୍ଥଫଳ ଯେହୁ । ଅନ୍ନକୁ ସରି ନୋହେ କେହୁ ॥
ଏ ଜୀବ ଆତ୍ମା ଦହି ହୋଇ । ଯେ ବେଳେ ଅନ୍ନ ଦାନଦେଇ ॥
ସେ ପ୍ରାଣୀ ଦେଖେ ନିଜ ବ୍ରହ୍ମ । କୋଟିଏ ଶମ୍ଭୁଫଳ କର୍ମ ॥
ବ୍ରହ୍ମାଣ୍ଡେ ଯେତେ ଜୀବ ଜନ୍ତୁ । କେହି ନ ଜାଣେ ମୋର ହେତୁ ॥

ସେ ମୋତେ ଭେଟଇ ଅବଶ୍ୟ । ଅନ୍ତରେ ବ୍ରହ୍ମା ପରକାଶ ।।
ଏକ କରିଣ ସର୍ବ ଜୀବେ । ଯେ ଦେଖେ ପ୍ରତି ପ୍ରତି ଭାବେ ।।
ସେହି ତ ବ୍ରହ୍ମକୁ ଚିହ୍ନଇ । ଶୁଣ ରୁକ୍ମିଣୀ ପ୍ରାଣସହି ।।
ବ୍ରହ୍ମ ଏ ଆତ୍ମାକୁ ଚିହ୍ନଇ । ତେବେଟି ପରମକୁ ଯାଇ ।।
ମନକୁ ତହିଁ ଏକ କର । ଖଟିବି ଶ୍ରୀପାଦ ପଦ୍ମର ।।
ଏମନ୍ତ ଭାବେ ଭବୁ ତରି । କହନ୍ତି ପ୍ରଭୁ ଦଇତାରି ।।
ମନଟି ସର୍ବ ଜୀବ ଦାତା । ମନଟି ଜଗତର କର୍ତ୍ତା ।।
ମନଟି ଯମ କାଳ ଫାଶ । ମନଟି ପରମ ପୁରୁଷ ।।
ମନଟି ପଚିଶ ପ୍ରକୃତି । ମନଟି ପାଞ୍ଚ ସେନାପତି ।।
ମନ ଗୋ କ୍ରୋଧ ଅହଙ୍କାର । ମନଟି ପରମ ଈଶ୍ୱର ।।
ମନ ଗୋ ଯୋଗୀ ନିରଞ୍ଜନ । ମନଟି ସ୍ଥିର ବ୍ରହ୍ମଜ୍ଞାନ ।।
ମନ ଗୋ ସଦା ବ୍ରହ୍ମଚାରୀ । ମନ ଗୋ ଦଇରି ଅଇରି ।।
ମନ ଗୋ ଅଲେଖ ଅନ୍ତର । ମନ ଗୋ ଜଗତ ଈଶ୍ୱର ।।
ମନରୁ କାମ କ୍ରୋଧ ଜାତ । ମନ କନ୍ଦର୍ପେ ପ୍ରପୀଡ଼ିତ ।।
ମନକୁ ଜାଣୁ ଗଙ୍ଗାଧର । ମନ ନିର୍ଗୁଣ ନିରାକାର ।।
ମନକୁ ଯେହୁ ବୋଧ ଦ୍ୟନ୍ତି । ଏ ଭବ ସାଗରୁ ତରନ୍ତି ।।
ମୁଢ଼ ଯେ ହୀନ ଶିଶୁ ଦାସ । ପାଦପଦ୍ମକୁ କରେ ଆଶ ।।
ଶ୍ରୀଜଗନ୍ନାଥ ପରସନ୍ନ । ତେଣୁ ମୁଁ କଲଇ ଲିଖନ ।।

ଇତି ଶ୍ରୀ କଲ୍କୀ ଭାଗବତେ ମହାପୁରାଣେ ରୁକ୍ମିଣୀ
ବାସୁଦେବ ସମ୍ବାଦେ ନାମ ଷୋଡ଼ଶୋଽଧ୍ୟାୟଃ ।



# ସପ୍ତଦଶ ଅଧ୍ୟାୟ

## ରୁକ୍ମିଣୀ ଉବାଚ

ବୋଲନ୍ତି ଭୀଷ୍ମକ କୁମାରୀ । ଶୁଣ ହେ ପ୍ରଭୋ ଦଇତାରି ॥
ସର୍ବ ଘଟରେ ମନ ପୂଜା । ମାଛି କି ପ୍ରଧାନ ପରଜା ॥
ଏହାକୁ ଯେ ନିତ୍ୟ ସଂସାରେ । ମନରେ ଏକ ସରି କରେ ॥
ମୋତେ ଯେ କହ ମାୟାକରି । ପରଜା କାହିଁ ଅଛି ହରି ॥
ପରଜା ଦେଶରେ ଅଭିନ୍ନ । କେ କାହିଁ ଅଛି ଭଗବାନ ॥
ତ୍ରିଗୁଣେ ଜାତ ଏ ଶରୀର । ତ୍ରୟରେ ତିନି ରୂପ ତୋର ॥
ଫେଡ଼ି କହିବ ବନମାଳୀ । ବୋଲି ଶୋଇଲେ ଗଡ଼ଘାଲି ॥

## ଶ୍ରୀ ବାସୁଦେବୋବାଚ

ପ୍ରିୟାର ବଚନେ ଶ୍ରୀହରି । ପ୍ରେମେ କହନ୍ତିକୋଳ କରି ॥
ମନକୁ ଗଙ୍ଗା ବୋଲି କହି । ପ୍ରଧାନେ ଯମୁନା ବୋଲାଇ ॥
ପରଜା ପ୍ରକୃତି ପୁରୁଷ । ରାଜ୍ୟେ ଯେ ବିହରଇ ହଂସ ॥
ଏ ତିନି ଏକ ବୋଲି ଜାଣ । ସଂଯୁକ୍ତ ହୋଇଲା ପ୍ରମାଣ ॥
ଆହୁରି କହିବା କଥାଏ । ହଂସ ଶୂନ୍ୟରେ ଚରୁଥାଏ ॥
ସରସ ତ୍ରିବେଣୀ ମଧର । ପୋଖରୀ ଅମୂଲ୍ୟ ଭଣ୍ଡାର ॥
ବେଳେ ଜାଣିଣ ହଂସ ଯାଇ । ତ୍ରିବେଣୀ ସଙ୍ଗମ ଯେ ହୋଇ ॥
ଝର ଲାଗିଣ ରହେ ଧୀର । ଅସ୍ୱାଦୁ ଭକ୍ଷଇ ସଧୀର ॥
ଉଦୟ ଅସ୍ତ ଏକ ଜାଣ । କେହି ନୁହନ୍ତି ଚିର ପୁଣ ॥
ହଂସକୁ ଜାଗେ ଯେ ମିତ୍ରୁଣୀ । ତାକୁ ସୁଜ୍ଞାନୀ ବୋଲି ଜାଣି ॥

## ରୁକ୍ମିଣୀ ଉବାଚ

ରୁକ୍ମିଣୀ ବୋଇଲେ ଭୋ ନାଥ । ମୋତେ ଏ ଅଗୋଚର ପଥ ॥
ହଂସକୁ ରଖିବା କେମନ୍ତେ । ଉଡୁ ଯେ ଅଛି ଅନୁବ୍ରତେ ॥
କେବଣ ଡାଳେ ତାର ବାସ । କହିବା ହେଉ ପୀତବାସ ॥

## ଶ୍ରୀ ବାସୁଦେବୋବାଚ

ହସି କହନ୍ତି ଚକ୍ରପାଣି । କହିବା ତହିଁ ଜ୍ଞାନ ପୁଣି ॥
ଭୂରୁ କମାଣ ଦୃଢ଼ ଚାପ । ଦଶ ଦେବତା ଅଙ୍ଗେ ସ୍ଥାପ ॥
ଦଶଟି ଦ୍ୱାରିଙ୍କି ଜାଗିବ । ମନକୁ ପବନେ ବାନ୍ଧିବ ॥
ପ୍ରଥମେ ଇଡ଼ାଁଳାକୁ ଧରି । ପିଅଁଳା ଥିବ ଦୃଢ଼ କରି ॥
ମଧ୍ୟରେ ଶିଶୁମୁନା ଜପ । ନାଶିବ ଅଇରି କନ୍ଦର୍ପ ॥
ତେବେ ଶରୀର ସୁଖେ ଥାଇ । ଅକ୍ଷୟ ଅଜ୍ରାମର ହୋଇ ॥
ଏ ଜ୍ଞାନ ସାଧ ଦୃଢ଼ କରି । ଶ୍ରୀରାମ ନାମ ଦୃଢ଼େ ଧରି ॥
ରୁକ୍ମିଣୀ ଆଗେ କୃଷ୍ଣ କହି । ଜପିଲେ ପାତକ ହରଇ ॥
ଅନାଦି ଦେବତା ପ୍ରସନ୍ନ । ହସି କହନ୍ତି ଭଗବାନ ॥
ଗୁପତେ ଘୋଷୁଅଛି ଶିବ । ନାମ ଗୋଟିକ ବାସୁଦେବ ॥
କାକ ଭୂଷଣ୍ଡ ହନୁମାନ । କରନ୍ତି ନାମ ସଂକୀର୍ତ୍ତନ ॥
ଶୁଣ ରୁକ୍ମିଣୀ ମନ ଦେଇ । ଏଥୁ ଅଧିକ ଜ୍ଞାନ ନାହିଁ ॥
ନାମଟି ବ୍ରହ୍ମ ବୋଲି ଜାଣ । ଜାଣୁ ଦୁ ଜାଣିଣ ଅଜ୍ଞାନ ॥
ମୋର ମାୟାରେ ମୋହ ହୋଇ । ବୋଲନ୍ତି ଆହୁରି ଅଛଇ ॥
ଏମନ୍ତ ଜ୍ଞାନ ମନେ ଚିନ୍ତି । ସଂସାର ପଟଳେ ଭୁଲନ୍ତି ॥
ମାୟାରେ କରନ୍ତି ଆଚାର । ଲୋଭ ମୋହ ଯେ ଅହଙ୍କାର ॥

## ରୁକ୍ମିଣୀ ଉବାଚ

ରୁକ୍ମିଣୀ ବୋଲନ୍ତି ଗୋସାଇଁ । ସନ୍ଦେହ ଫେଡ଼ ଭାବଗ୍ରାହୀ ॥
କେ କାହା ମାତା ପିତା ବନ୍ଧୁ । ଫେଡ଼ିଣ କହ କୃପାସିନ୍ଧୁ ॥
ଏକରୁ କ୍ଷରିଲା ସଂସାର । କିମ୍ପାଇଁ ବୋଲଇ ମୋହର ॥
ଫେଡ଼ି କହିବା ଚକ୍ରଧାରୀ । ସେ ପୁଣି କାହିଁ ଅବତରି ॥
ରୁକ୍ମିଣୀ ବଚନେ ଗୋବିନ୍ଦ । ମନରେ ହୋଇଲେ ସାନନ୍ଦ ॥

## ଶ୍ରୀ ଭଗବାନୋବାଚ

ଯେଣୁ ମୋ ସର୍ବ ଭୂତେ ବାସ । ନିର୍ଗୁଣ ରୂପେ ପରକାଶ ॥

ସ୍ତିରୀ ପୁରୁଷ ଏକ ଜାଣ । ଖେଳଇ ଉଦାସ ଭାବେଣ ॥
ଯେ ଯାହା ଭାବେ ଭାରାପାଇ । ଭକ୍ତକୁ ପ୍ରେମ ରସ ଦେଇ ॥
ତାହାଙ୍କ ଭାବେ ବୁଡ଼ିଥାନ୍ତି । ସେ ମାୟା ଜାଣି ନ ପାରନ୍ତି ॥
ତହିଁ ମୁଁ ଅଟେ ସୂତ୍ରଧର । ସଞ୍ଚ ଏକରୁ ଅବତାର ॥
ବାଳକ ରୂପେ ଖେଳ ଦେଉଁ । ମାୟାରେ ବାପ ବୋଲି କହୁ ॥
ଗୁପତେ ଡାକେ ଏକ ବାଣୀ । କେ କାହା ମାତା ପିତା ପୁଣି ॥
ମୋହନା ଫାଶ ଦଉଡ଼ିରେ । ପଡ଼ିଣ ବୁଲନ୍ତି ସଂସାରେ ॥
ସେ ମୋତେ ଏକ ବୋଲି ଜାଣ । ମୁଁ ତାଙ୍କ ମାତା ପିତା ପୁଣି ॥
ମୋ ପାଦେ ମନ ନିବେଶନ୍ତି । ସକଳ ମୋତେ ସମର୍ପନ୍ତି ॥
ସେ ଅଟେ ମୋହର ଭକତ । ଶୁଣ ଗୋ ପ୍ରାଣ ପଞ୍ଚଭୂତ ॥
ମୋ ନାମ ଗାୟନ କରନ୍ତି । ଦଣ୍ଡେହେଁ ଭାବ ନ ଛାଡ଼ନ୍ତି ॥
ସେ ପ୍ରାଣୀ ଭବୁ ଯାନ୍ତି ତରି । ଶୁଣ ଗୋ ଭୀଷ୍ମକ କୁମାରୀ ॥

## ରୁକ୍ମିଣୀ ଉବାଚ

ରୁକ୍ମିଣୀ ବୋଲନ୍ତି ଅଚ୍ୟୁତ । କଥାଏ କହ ମୋତେ ତତ୍ୱ ॥
ନିଶ୍ଚୟ କରିଣ ଗୋସାଇଁ । ତୁମ୍ଭଙ୍କୁ କାହିଁ ଭେଟ ପାଇ ॥
ନିର୍ଣ୍ଣୟ କହ ମୋ ଆଗର । ମାୟା ନ କରି ଚକ୍ରଧର ॥
ସଂସାର ଦ୍ୱନ୍ଦ୍ୱେ ନରେ ପଡ଼ି । ମାୟାରେ ଭ୍ରମୁଥାନ୍ତି ଜଡ଼ି ॥
ତାହାର ନ ରହଇ ଜ୍ଞାନ । କର୍ମରେ ହୋଇଣ ବନ୍ଧନ ॥
ଏମନ୍ତ ଲୋକ ଗତି କାହିଁ । କହିବା ତ୍ରୈଲୋକ୍ୟ ଗୋସାଇଁ ॥

## ଶ୍ରୀ ବାସୁଦେବୋବାଚ

ଶ୍ରୀକୃଷ୍ଣ ବୋଲନ୍ତି ଗୋ ଶୁଣ । ଜ୍ଞାନର ଏମନ୍ତ ଲକ୍ଷଣ ॥
ଯେ ପ୍ରାଣୀ ମୋତେ ଭଜୁଥାଇ । ଯେ ଯାହା ବ୍ୟାପାରେ ଲାଗଇ ॥
ମୋ ପାଦେ ଚିତ୍ତ ଥାଏ ଦେଇ । ତାହାକୁ ବ୍ରହ୍ମ ବୋଲି କହି ॥
ସକଳ ସମର୍ପେ ଯେ ମୋତେ । ମୁଁ ଥାଇ ତାହାର ସଙ୍ଗତେ ॥

ଭାବବନ୍ଧୁଟି ମୋହ ନାମ । ତେଣୁ ମୁଁ ସର୍ବ ଘଟେ ସମ ॥
ମୋହର ଭକତ ଉଦାସ । ନିରତେ ପିଏ ମୋହ ରସ ॥
ସେ ଭକ୍ତ ଅଟଇ ମୋ ଅଙ୍ଗ । ଦଣ୍ଡେ ନ ଛାଡ଼େ ତାର ସଙ୍ଗ ॥
ଏଣୁ ସେ ଗୁପତରେ ଥାଇ । ତାହାକୁ ନ ଚିହ୍ନନ୍ତି କେହି ॥
କଟୀରେ କଉପୁନୀ ଧାରୀ । କନ୍ଥା ଦଉଡ଼ି ଚର୍ମ ସରି ॥
ଏମନ୍ତ ବେଶେ ହାଦେ ଥାଇ । ଜ୍ଞାନୀଙ୍କ ଜ୍ଞାନ କହିଦେଇ ॥
ଭକ୍ତଙ୍କୁ ଦେଖିଲେ ସେବଇ । ପାଦ ଉଦକ ପିଏ ନେଇ ॥
ମୋ ପାଦପଦ୍ମ ତେବେ ପାଇ। ଜ୍ଞାନ କହିଲୁ ଶୁଣ ସହୀ ॥
ଯେ ମୋର ଭକ୍ତ ପ୍ରାଣହିତ । ତାହାକୁ ନ ତେଜଇ ମିତ ॥
ସଂସାର ଜଡ଼େ ଯେବେ ପଡ଼ି । ମୋ ପାଦେ ଚିତ୍ତ ଥାଇ ବୁଡ଼ି ॥
ସକଳ ଜୀବେ ସମ ଜ୍ଞାନ । ଗୃହବାସୀଙ୍କ କଥା ଶୁଣ ॥
ଆନନ୍ଦେ ନାମ ଗାଉଥାଇ । ହିଂସା ଯା ହୃଦରେ ନ ଥାଇ ॥
ସର୍ବ ଦେଖଇ ସମସରି । ଭାବଇ ଦଣ୍ଡେ କ୍ଷଣେ ହରି ॥
ମୋହର ବୋଲ ନ ବୋଲଇ। ସକଳ ମୋତେ ସମର୍ପଇ ॥
ତାର ଏମନ୍ତ ଭାବ ଦେଖି । ଅନ୍ଧାରେ କଷ୍ଟୁଥାଇ ସଖୀ ॥
ଭିକ୍ଷୁକ ପ୍ରାୟେ ହୋଇଥାଇ । ସଂଯୋଗ ଅନ୍ନ ନ ମିଳଇ ॥
ବ୍ୟାକୁଳେ ବୋଲେ କୃଷ୍ଣରାଧା । ତା ଶୁଣି ମନେ ଜନ୍ମେ ଶ୍ରଦ୍ଧା ॥
ତକ୍ଷଣେ ଦୁଃଖ ତାର ଯାଇ । ମଲେ ସେ ବୈକୁଣ୍ଠେ ବସଇ ॥
ଏ କଥା ସତ୍ୟ ଗୋ ଆମ୍ଭର । ଫେଡ଼ିଣ କହିଲୁ ନିକର ॥
ଗୃହରେ ଥାଇ ସେ ତରଇ । ତାହାର ସମସ୍ତେ ଯେ ଥାଇ ॥
ଏ ସର୍ବ ଏକ ଯହୁଁ ଜାଣି । ଭବ ସାଗର ଝଣ୍ଟୁଆଣୀ ॥
ନାବ ବୋଇତ କିଛି ନାହିଁ । ସୁଖରେ ଭାସୁଅଛି ସହୀ ॥
ଶ୍ରୀରାମ ନାମ ଗାନ କରି । ସୁଖେଣ ଭବ ନଦୀ ତରି ॥
ଜଳହିଁ ନୋହେ ଶୁଷ୍କ ଭୂଇଁ । ଚାଲିଲେ ପାଦ ନ ଚଳଇ ॥
ଶୁଣ ରୁକ୍ମିଣୀ ଏକ ଚିତ୍ତେ । ସଂସାର ଜନ ବନ୍ଧୁହିତେ ॥

ଦୟା ସାଗର ଚକ୍ରଧର । ଅଖିଳ ଜନଙ୍କ ସୋଦର ॥
ଭକ୍ତି ଲକ୍ଷଣ ଯେବେ ବିଧି । କହନ୍ତି କରୁଣା ବାରିଧି ॥
ଶୁଣି ରୁକ୍ମିଣୀ ମନେ ତୋଷ । କହଇ ଦୀନ ଶିଶୁ ଦାସ ॥

ଇତି ଶ୍ରୀ କଲ୍‌କୀ ଭାଗବତେ ମହାପୁରାଣେ ରୁକ୍ମିଣୀ
ବାସୁଦେବ ସମ୍ବାଦେ ନାମ ସପ୍ତଦଶୋଽଧ୍ୟାୟଃ ।



## ଅଷ୍ଟାଦଶ ଅଧ୍ୟାୟ

### ରୁକ୍ମିଣୀ ଉବାଚ

ରୁକ୍ମିଣୀ ବୋଲନ୍ତି ଗୋସାଇଁ । ଏବେ ମୁକତ ହେଲି ମୁହିଁ ॥
ତିରିଶ ନକ୍ଷତ୍ରରୁ ତିନି । କହ ହୋ ପ୍ରଭୋ ଗୁଣମଣି ॥

### ଶ୍ରୀ ଭଗବାନୋବାଚ

ଶ୍ରୀକୃଷ୍ଣ ବୋଇଲେ ଗୋ ଶୁଣା ଅତି ରହସ୍ୟ କଥା ପୁଣ ॥
ପ୍ରଥମେ ଆକାଶ ବାୟବ୍ୟ । ଗ୍ରହଣ କରୁଥିବେ ଠାବ ॥
ତଳ ପାତାଳ ବୋଲି କହି । ଶୁଣ ଗୋ ପ୍ରାଣପ୍ରିୟା ସହୀ ॥
ଏମନ୍ତେ ତିରିଶ ପ୍ରମାଣ । ସୁଜ୍ଞାନୀ ଧରିଥିବେ ମନ ॥
ହିଂସା କପଟେ ନ ବୁଲିବ । ଦୁଃଖୀଙ୍କି ଦୟା ହୃଦେ ଥିବ ॥
ଦରିଦ୍ରେ ଦାନ ଦିଏ ଯେହୁ । ବୈକୁଣ୍ଠେ ଠାବ ପାଏ ସେହୁ ॥
ବ୍ରାହ୍ମଣ ଦେବତା ଯେ ପୂଜେ । ତହିଁ ଦେଖଇ ଚତୁର୍ଭୁଜେ ॥
ରୁକ୍ମିଣୀ ବୋଲନ୍ତି ଗୋସାଇଁ । କେବଣ ଦାନ ନାହିଁ ଦେଇ ॥

### ଶ୍ରୀ ବାସୁଦେବୋବାଚ

ଶ୍ରୀକୃଷ୍ଣ ବୋଲନ୍ତି ଗୋ ଶୁଣ । ଭୂମି ଦାନର ଯେତେ ଗୁଣ ॥
କଳିରେ ଭୂମିଦାନ ସହୀ । ମାୟାରେ ନ ମାନିବେ କେହି ॥
ଯେ ରାଜା ଦାନ ଦେଉଥାଇ । ବିଷ୍ଣୁ ସାଙ୍ଗରେ ସଙ୍ଗୀହୋଇ ॥
ବାମନ ରୂପେ ଭଗବାନ । ଘେନିଣ ଥିଲେ ଭୂମିଦାନ ॥
ଶାସନ କରୁଥିବେ ସେହି । ମାୟାରେ ନ ମାନିବେ କେହି ॥

ବଳି ରାଜାର ଉଚ୍ଛିଷ୍ଟେଣ । ସମସ୍ତେ କରିବେ ଭକ୍ଷଣ ॥
ମୁଁ ବୋଲି ଗରବ କରିବେ । ଅଳପ ଦିନେ ନାଶଯିବେ ॥
ତେଣୁଟି କୋଠ ବୋଲି ଦାନ। କାହାରି ନାହିଁ ତହିଁ ପଣ ॥

## ରୁକ୍ମିଣୀ ଉବାଚ

ରୁକ୍ମିଣୀ ବୋଲନ୍ତି ଶ୍ରୀହରି । ସକଳ ଅନ୍ନ ତହୁଁ କ୍ଷରି ॥
ନାମ ରୂପରେ ଭେଟ ନାହିଁ । ଅବନା ଓଁ କାରେ ଅଛଇ ॥

## ଭଗବାନୋବାଚ

ଶ୍ରୀହରି ବୋଲନ୍ତି ଗୋ ଶୁଣ । ଦାନରେ ଅନ୍ନ ବ୍ରହ୍ମ ଜାଣ ॥
ଅନ୍ନହୁଁ ଆନ ଦାନ ନାହିଁ । ଆବର ଅନ୍ନଦାନ ଚାହିଁ ॥
ନାମର ଏହି ମତି ଜାଣ । ରୂପେଣ ପରମ ଶୂନ୍ୟେଣ ॥
ସେ ଶୂନ୍ୟ ନ ଜାଣନ୍ତି କେହି । ନାମଟି ସର୍ବ ଭୂତେ ରହି ॥
ଶୂନ୍ୟରୁ ବ୍ରହ୍ମଟି ବାହାର । ସକଳ ଠାବେ ଅବତାର ॥
ଜ୍ୟୋତି ବିକାଶି ଅଛି ପୂରି । ତେଣୁଟି ସର୍ବ ଘଟେ ହରି ॥
ରୁକ୍ମିଣୀ ବୋଲନ୍ତି ଗୋସାଇଁ । କଳିରେ ଧର୍ମ ବଳ ନାହିଁ ॥

## ରୁକ୍ମିଣୀ ଉବାଚ

ତୁମ୍ଭେ ଯେ ଗୁପତେ ରହିବ । ଏହା କହିବା ବାସୁଦେବ ॥
ଭକତ କେମନ୍ତ ପ୍ରକାରେ । ରହିବେ କେବଣ ଆଚାରେ ॥

## ଶ୍ରୀ ଭଗବାନୋବାଚ

ପ୍ରଭୁ ବୋଲନ୍ତି ଶୁଣ ସହୀ । ଧର୍ମ ରହିବ ଗୁପ୍ତ ହୋଇ ॥
ଅଧର୍ମ ସହୁ କରୁଥିବ । ଲକ୍ଷ୍ମୀ ତାହାର ସଙ୍ଗେ ଥିବ ॥
ଗୋଡ଼ାଇ ଦେଉଥିବ ଶିରୀ । ସେ ପ୍ରାଣୀ ନ ଭାବିବ ହରି ॥
ବୋଲିବ ଏ ମୋହର କର୍ମ । ମିଳି ଅଛଇ ଅନ୍ନ ବ୍ରହ୍ମ ॥
ଲକ୍ଷ୍ମୀ ଗୋଡ଼ାଇ ଅଛି ମତେ । ଅକର୍ମ କରୁଥିବି ନିତ୍ୟେ ॥
ଏମନ୍ତେ ଦିନ କେତେ ଥିବ । ମାୟାରେ ଭ୍ରମି ନାଶ ଯିବ ॥
ଲକ୍ଷ୍ମୀର ମାୟା ସେ ନ ଜାଣି । ଅକୃତେ ନାଶ ଯିବ ପୁଣି ॥

ଅକୃତେ ଭୋଗ କରୁଥିବ । ପ୍ରାନ୍ତେ ସକଳ ନାଶ ଯିବ ॥
ଧର୍ମ ଆଚାରେ ଯେହୁ ପାଇ । ସେ ଅଟେ ନିଷ୍କଳଙ୍କ ଦେହୀ ॥
ତାହାର ସୁଖ ନୋହେ ଦୁଃଖ । ଗୁପତେ ରହିଥିବ ସୁଖ ॥
କୁବେର ସମାନ ତାହାର । ନିଶ୍ଚଳ ସମ୍ପତ୍ତି ଯାହାର ॥
ସେ ପ୍ରାଣୀମାନେ ନିଜ ଧର୍ମ । ବୋଲନ୍ତି ନାହିଁ ମୋର କର୍ମ ॥
ମୋହର ବୋଇଲେ ଲାଗଇ । ଉଦାସେ କିଛି ଲାଗେ ନାହିଁ ॥
କଳିରେ ଭକତଙ୍କ ଗୁଣ । କହିଲେ ନ ସରିବ ପୁଣ ॥
ଅଦୃଷ୍ଟ ଭାବନା କରିବେ । ଅଭାବେ ନାମ ନ ମାନିବେ ॥
ମୋହର ନାମ ନ ମାନିବେ । କୀର୍ତ୍ତନ ଖଣ୍ଡନ କରିବେ ॥
ଚାରି ଯୁଗର ଯେତେ କଥା । ସମସ୍ତ କହିବେ ବକତା ॥
ସେ ଭକ୍ତ ସବୁଠାରେ ଜଡ଼ । ବିଷ୍ଣୁ ଭକତି ନାହିଁ ମୂଢ଼ ॥
ବଚନ ନ କହିବେ ବାରି । ସେ ନାମ ନପାରିବେ ଧରି ॥
ଶାନ୍ତ ସୁଶୀଳ କଥା କହି । ନଟର ପ୍ରାୟେ ମାୟା ବହି ॥
ଏ କଳିଯୁଗର ଭକତ । ପ୍ରଥମୁ ଜାଣି ବେବ ତତ୍ୱ ॥
ତେଣୁ ଗୋ ଚାରି ଯୁଗୁ ବଡ଼ । ମୋ ନାମେ ବାନ୍ଧିଥିବେ ଗଡ଼ ॥
ସେ ନିଜେ ଭାବୁଥିବେ ହରି । ମୁକୁନ୍ଦ ମାଧବ ମୁରାରୀ ॥
ସେ ଭକ୍ତ ପାଦ ପଡ଼େ ନାହିଁ । କୋଟି ଯଜ୍ଞର ଫଳ ହୋଇ ॥
ଅନେକ ପୁଣ୍ୟ ଯହିଁ ପାଇ । ଶୁଣ ଗୋ ପ୍ରିୟେ ମନ ଦେଇ ॥
ତାହାଙ୍କୁ ନ ଚିହ୍ନିବେ କେହି । ମୂଢ଼କୁ ବୋଲିବେ ଗୋସାଇଁ ॥
ଭକ୍ତ ମହିମା ପ୍ରିୟେ ଶୁଣ । କଳିରେ ଭକ୍ତ ନାରାୟଣ ॥
ବିଷ୍ଣୁ ପାଷାଣ ହୋଇଥିବ । ଭକ୍ତଙ୍କ ସଙ୍ଗେ ବିହରିବ ॥
ତେଣୁ ଭକତ ମୋର ବଡ଼ । କହିଲୁ ବଚନ ଗୋ ଦୃଢ଼ ॥

## ରୁକ୍ମିଣୀ ଉବାଚ

ରୁକ୍ମିଣୀ ବୋଲନ୍ତି ଭୋ ନାଥ । ସନ୍ଦେହ ପୁର୍ଣ୍ଣ ମୋର ଚିତ୍ତ ॥
କାହାକୁ ଭୟ ତୁମ୍ଭ ଅଛି । ଫେଡ଼ିଣ କହ ଶିରୀବତ୍ସ ॥

ତୁମ୍ଭେ ଯେ ଜଗତର କର୍ତ୍ତା । କିମ୍ପାଇଁ ନ କହିଲ କଥା ॥

## ଶ୍ରୀ ବାସୁଦେବୋବାଚ

ଶ୍ରୀକୃଷ୍ଣ ବୋଲନ୍ତି ଗୋ ଶୁଣ । ମୁଁ ମାୟା କରିଛି ଭିଆଣ ॥
ବଉଦ୍ଧ ରୂପେ ଭାବଗ୍ରାହୀ । ବଚନ କାହାକୁ ନ କହି ॥
ତେଣୁ ଭକତ ଜନ କଥା । ହୋଇବ ଜଗତ କରତା ॥
ଆମ୍ଭେ ମଉନେ ଥିବୁଁ ରହି । କାହାକୁ ବଚନ ନ କହି ॥
କଳିରେ ଯାବତ ଦେବତା । କେହି ଯେ ନ କହିବେ କଥା ॥
ମାୟାରେ ପୃଥ୍ୱୀ ନାଶ ଯିବ । ଦେବତା ପାଷାଣେ ରହିବ ॥
କଳିହିଁ ଆମ୍ଭେ ସିନା ଜାଣ । ସେ ଯୁଗେ ଏମନ୍ତ ଭିଆଣ ॥
ତୁମ୍ଭଙ୍କୁ କହିଲୁ ଗୋ ଶୁଣ । ବଉଦ୍ଧ ରୂପର ଭିଆଣ ॥

## ରୁକ୍ମିଣୀ ଉବାଚ

ରୁକ୍ମିଣୀ ବୋଲନ୍ତି ଗୋବିନ୍ଦ । କଥାଏ କହ ଫେଡ଼ି ଦ୍ୱନ୍ଦ୍ୱ ॥
ମୂଳ କମଳ ହାଦେ ଯେହୁ । ତାହା କହିବା ମହାବାହୁ ॥
ବିହି ବିଧାତା କାହୁଁ ଜାତ । କହ ହେ ପ୍ରଭୁ ଜଗତ୍ଭୂତ ॥
ଅଷ୍ଟ ଗ୍ରହଙ୍କ ଘର କାହିଁ । କହିବା ତ୍ରୈଲୋକ୍ୟ ଗୋସାଇଁ ॥

## ଶ୍ରୀ ଭଗବାନୋବାଚ

ଶ୍ରୀକୃଷ୍ଣ ବୋଲନ୍ତି ଗୋ ଶୁଣ । କହିବା ତାହାଙ୍କ ଲକ୍ଷଣ ॥
ମୂଳ କମଳ ଜାଣ ସେହୁ । ଅନାଦି ପ୍ରାଏ ସ୍ଥିରୀ ସେହୁ ॥
ବିଷ୍ଣୁ ଈଶ୍ୱର ବ୍ରହ୍ମବେତ୍ତା । ବେଦରୁ ଜନ୍ମିଲା ବିଧାତା ॥
ଅଷ୍ଟ ଗ୍ରହହିଁ ପଶୁପତି । ଶୁଣ ଗୋ ଭୀଷ୍ମକ ଦୁହିତୀ ॥
ଏ ରୂପେ ସର୍ବଠାରେ ଥାଉ । ପଞ୍ଚାଶେ ପବନ ବୋଲାଉ ॥
ଜଳ ଆକାଶ ଚନ୍ଦ୍ର ସୂର୍ଯ୍ୟ । ବାୟବ ଅଷ୍ଟ ଆପ ତେଜ ॥
ସକଳ ବିଷ୍ଣୁ ବୋଲି ଜାଣି । ଚିତ୍ତରେ ଧର ଗୋ ମିତଣୀ ॥
ଆନ ଅକ୍ଷରେ ଆମ୍ଭେ ରହୁଁ । ଅନନ୍ତ ଶିରେ ଆମ୍ଭେ ଥାଉଁ ॥
ଦୁର୍ଗା ଜପଇ ଯେଉଁ ମନ୍ତ୍ର । ବୋଲାଇ ଜଗତର ମାତ ॥

ବ୍ରହ୍ମାଙ୍କ ନିଜ ଜପ ଯେହୁ । ଈଶ୍ୱର ପ୍ରାର୍ଥେ ଶମ୍ଭୁ ସେହୁ ॥
ଏମନ୍ତେ ଅବଳା ମନ୍ତର । କହି ହସନ୍ତି ଚକ୍ରଧର ॥

## ରୁକ୍ମିଣୀ ଉବାଚ

ରୁକ୍ମିଣୀ ବୋଲନ୍ତି ଗୋସାଇଁ । ଏବେ ମୁକତ ହୋଇଲଇଁ ॥
ବଉଦ୍ଧ ରୂପେ ମହାମେରୁ । କେମନ୍ତେ କାଠ ତିନି ଦାରୁ ॥
ସେ ଦାରୁ କାହୁଁ ଅବତରି । ବିଷ୍ଣୁ ବୋଲଇ ଦଇତାରି ॥

## ଶ୍ରୀ ବାସୁଦେବୋବାଚ

ପ୍ରିୟାର ମୁଖୁଁ ଏହା ଶୁଣି । ହସି କହନ୍ତି ଚକ୍ରପାଣି ॥
ବ୍ରହ୍ମା ବାସବ ତ୍ରିଲୋଚନ । ଏହା ଗୋ ନ ଜାଣନ୍ତି ଜାଣ ॥
ତୁମ୍ଭର ପ୍ରେମରସେ ବୁଡ଼ି । କହଇ ପ୍ରିୟେ ତାହା ଫେଡ଼ି ॥
ଅନାଦି ଦୁହିତା କେତୁକା । ତା ନାମ କଳଙ୍କୀ ରାଧିକା ॥
ସେ ରାଧା ବସୁମତୀ ହୋଇ । ତହୁଁ ଅମ୍ବିକା ଜାତ ହୋଇ ॥
ରାଧିକା ବଳିର ସୁନ୍ଦରୀ । ଅଧରେ କାଠ ଆଦିକରି ॥
ମଧ୍ୟେ ଅନାଦି ବୋଲି ଜାଣ । ଏମନ୍ତେ ତିନି ଦାରୁ ପୁଣ ॥
ତ୍ରୟ ଶାଖାରୁ ତ୍ରୟ ମୂର୍ତ୍ତି । ଶୁଣ ଗୋ ଭୀଷ୍ମକ ଦୁହିତୀ ॥
ପ୍ରତିଫଳରେ ବୃନ୍ଦାବତୀ । ମୂଳରେ ଲକ୍ଷ୍ମୀ ସରସ୍ୱତୀ ॥
ତେଣୁଟି ସିଦ୍ଧ ବୃକ୍ଷ ଜାଣ । ସିଦ୍ଧହିଁ ପାଇଲା କାରଣ ॥
ତା ପୁଣି ନ ଜାଣନ୍ତି କେହି । ଦହନେ ଅଗ୍ନିରେ ପକାଇ ॥
କଞ୍ଚା ଖାଇଲେ ସଖି ଶୁଣ । ଶରୀରେ ହୁଅଇ ନିପୁଣ ॥
ଅନନ୍ତ ବ୍ରହ୍ମାଣ୍ଡ ଉଦୟେ । ସକାଳେ ସଞ୍ଜେ ସେହି ଥାଏ ॥
ତୁମ୍ଭେ ଗୋ ଆମ୍ଭର ପରାଣ । କହିଲୁ ବ୍ରହ୍ମଜ୍ଞାନ ଶୁଣ ॥
ଏ ଗ୍ରନ୍ଥ ଶୁଣି ପାନ୍ତି ପାର । ଅମୃତ ରସ ଏ ଭଣ୍ଡାର ॥
କଳିକି ଭାଗବତ ଏହି । ଶୁଣିବେ ଏକ ମନେ ଯେହି ॥
ମୁକ୍ତ ହୋଇବେ ସେହୁ ପୁଣ । ବସିବେ ବୈକୁଣ୍ଠ ପୁରେଣ ॥
ଅନନ୍ତ ପାଦପଦ୍ମ ଧରି । ଭକତ ମାର୍ଗକୁ ଆଦରି ॥

ହୀନ ଯେ ଶିଶୁଦାସ ପୁଣ । ବନ୍ଦଇ ଶ୍ରୀରଙ୍ଗା ଚରଣ ॥

## ରୁକ୍ମିଣୀ ଉବାଚ

ରୁକ୍ମିଣୀ ବୋଇଲେ ଅଚ୍ୟୁତ । ଶୁଣିଲି ପୁରାଣ ଚରିତ ॥
ଏବେ ମୁଁ ଚୋରାଇଣ ପୁଣି । ପ୍ରସନ୍ନେ କହ ଚକ୍ରପାଣି ॥
କଳିରେ ଦୁଃଖୀ ହେବେ ଜନ । ନୃପତି ନ ସ୍ଥାପିବେ ଧର୍ମ ॥
ପୃଥ୍ୱୀରେ ମେଳି ହେଉଥିବ । ଜଗତ ଅନ୍ଧାର ଦିଶିବ ॥
କୁହୁଡ଼ିବର୍ଣ୍ଣ ସବୁ ଦିଶି । ନିରତେ ପାପ ଥିବ ଗ୍ରାସି ॥
ନାରୀଏ ହୋଇବେ ଦ୍ୱିଚାରୀ । ଗୃହସ୍ଥ ଭୟ ନ ବିଚାରି ॥
ଅବିଦ୍ୟା ହୋଇବ ବହୁତ । ସଂସାରେ ପାପ ଥିବ ଯୁକ୍ତ ॥
ସ୍ତିରୀଙ୍କ କଥା ବିପରୀତ । ପୁରୁଷେ ଡ଼ରିବେ ବହୁତ ॥
କଷ୍ଟ ପାଇଣ ବସୁନ୍ଧରୀ । ଡାକିବ ରଖ ଦଇତାରି ॥
କ୍ଷେତ୍ରର ତହିଁ ନାହିଁ ତେଜ । ଯବନ ଉଜାଡ଼ିବେ ରାଜ୍ୟ ॥
ରାଜ୍ୟର କାରଣ କେ ହେବ । ଦୁଷ୍ଟଙ୍କୁ କେବା ସଂହାରିବ ॥

## ଶ୍ରୀ ଭଗବାନୋବାଚ

ପ୍ରଭୁ ବୋଲନ୍ତି ତାହା ଶୁଣି । କହିବା ତହିଁର କାହାଣୀ ॥
ନୃପତି କେହି ନ ରହିବେ । ଗିରିର କନ୍ଦରେ ଲୁଚିବେ ॥
ରାଣୀଯେ ହୋଇବେ ରାଉତ । ସଙ୍ଗରେ ଘେନିଥିବେ ପାତ୍ର ॥
ଦେବତା ହୋଇ ମହାଦୁଃଖୀ । ମୋତେ ଚିନ୍ତିବେ ପ୍ରାଣସଖୀ ॥
ଭକତେ ଡାକିବେ ତୋହାଇ । ରଖ ହେ ପ୍ରଭୁ ଭାବଗ୍ରାହୀ ॥
ସଂସାର ଜୀବ ଜନ୍ତୁ ଯେତେ । ଆକୁଳେ ସୁମରିବେ ମୋତେ ॥
ବୋଲିବେ ରଖ ଜଗନ୍ନାଥ । ଲକ୍ଷ୍ମୀର ପ୍ରାଣ ପଞ୍ଚଭୂତ ॥
ଆତଙ୍କ ନାଶନ ମୁରାରୀ । ଶୁଣ ତୁ ଦେବ ଦଇତାରି ॥
ଅନନ୍ତ ଗଦାଧର ତହିଁ । ଗୋପନେ ବୁଲୁଥିବ ମହୀ ॥
ତାହାକୁ ଆଜ୍ଞା ଦେବୁ ପୁଣ । ମାର ହେ ଅସୁର ଯବନ ॥

ମାତାଙ୍କୁ ତାର ଆଜ୍ଞା ଦେବୁ । ଖୋଜିଣ ଦୁଷ୍ଟଙ୍କୁ ମାରିବୁଁ ॥
ଆମ୍ଭ ଆଜ୍ଞାରେ ଜଣ ସାତ । ଦୁଷ୍ଟକୁ କରିବେ ନିପାତ ॥
ଗଉଡ଼ ସ୍ଥଳୀ ଯାଏ ପୁଣ । ସଙ୍ଗତେ ଲଙ୍ଘା ଏକ ଜାଣ ॥
ସମସ୍ତ ମାରି ମାତା ଯିବ । ନୃପତି ଖଣ୍ଡଗିରି ଥିବ ॥
ଏକ ଯେ ଶତ ସସ୍ର ତହିଁ । ନୃପତି ଖଟିବେ ଗୋ ଯାଇ ॥
ଈଶାନୁ ଚକ୍ରେକ ଆସିବ । ଅପର୍ଣ୍ଣା ତାର ସଙ୍ଗେ ଥିବ ॥
ସମସ୍ତେ ରୁଣ୍ଡ ହୋଇ ତହିଁ । ରାଜା କରିବେ ଭାବଗ୍ରାହୀ ॥
ରାଣୀ ଯେ ଅନୁମତି ଦେବେ । ସଂସାରେ ସତ୍ୟ ଆଚରିବେ ॥
ଦୁଃଖୀ ଦରିଦ୍ର ସୁଖୀ ହେବେ । ଧର୍ମରେ ସମସ୍ତେ ଚାଲିବେ ॥
ସୁଖୀ ହୋଇବେ ପ୍ରଜାଗଣ । ପୂଜା ପାଇବେ ଦେବେ ପୁଣ ॥
ଶିଷ୍ୟ କରିବେ ଗୁରୁଭକ୍ତି । ବେଦ ପଢ଼ିବେ ବିପ୍ରଯତି ॥
ବସୁଧା ସୁଖରେ ରହିବ । ଶସ୍ୟରେ ପୃଥ୍ୱୀ ପୂର୍ଣ୍ଣ ହେବ ॥
ଇନ୍ଦ୍ର ଯେ କାଳ ବେଳ ଜାଣି । ପୃଥ୍ୱୀରେ ବରଷିବ ପାଣି ॥
ଜଗତେ ହୋଇବ ଏକାନ୍ତ । ଧର୍ମର ହେବ ଆତ ଯାତ ॥
ଏ ଗ୍ରନ୍ଥ ମହିମା ଅପାର । ପାପୀଙ୍କ ମୁକତି ଦୁଆର ॥
ଶ୍ରୀକୃଷ୍ଣ ରୁକ୍ମିଣୀ ବିଚାର । ଶୁଣି ମୁକତ ହୁଅ ନର ॥
ରୁକ୍ମିଣୀ ବୋଇଲେ ଗୋସାଇଁ । ନିସ୍ତାର ପଥ ପାଇଲଇଁ ॥
ଏମନ୍ତ ପ୍ରିୟା ମୁଖୁ ଶୁଣି । ଦୟା ସାଗର ଚକ୍ରପାଣି ॥
ତକ୍ଷଣେ ଉଠିଣ ମୁରାରି । ପ୍ରିୟାକୁ କୋଳ କରି ଧରି ॥
ଆନନ୍ଦ ମନେ ବେନି ଜନେ । ପହୁଡ଼ି ରତ୍ନ ସିଂହାସନେ ॥
ହୀନ ଯେ ମୂଢ଼ ଶିଶୁ ଦାସ । ପାଦ ପଦ୍ମକୁ କରେ ଆଶ ॥

ଇତି ଶ୍ରୀ କଲ୍‌କୀ ଭାଗବତେ ମହାପୁରାଣେ ରୁକ୍ମିଣୀ
ବାସୁଦେବ ସମ୍ବାଦେ ନାମ ଅଷ୍ଟାଦଶୋଽଧ୍ୟାୟଃ ।

ସମାପ୍ତ

# କର୍ମକର୍ମାଣି ଓ ଅନ୍ୟାନ୍ୟ ବହି

ପୁରୋହିତ କର୍ମକାଣ୍ଡ ୧ ସେଟ୍
ବିହାରୀ କର୍ମକାଣ୍ଡ
ଠାକୁରପୂଜା ପଦ୍ଧତି
ଯଜୁର୍ବେଦୀୟ ନିତ୍ୟକର୍ମ ପଦ୍ଧତି
କିଶୋର ନିତ୍ୟକର୍ମ ପଦ୍ଧତି
ସାମବେଦୀୟ ଶ୍ରାଦ୍ଧ ପଦ୍ଧତି
ସାମବେଦୀୟ ନିତ୍ୟକର୍ମ ପଦ୍ଧତି
ସପ୍ତଶତୀ ଚଣ୍ଡୀ (ବଡ଼)
ସପ୍ତଶତୀ ଚଣ୍ଡୀ (ପକେଟ୍)
ବିବାହ କୌମୁଦୀ
ଦୁର୍ଗୋତ୍ସବ ଚନ୍ଦ୍ରିକା
ବୃହତ୍ ସ୍ତୋତ୍ରାଷ୍ଟକମାଳା
ବୃହତ୍ ସ୍ତୋତ୍ର ରତ୍ନାକର
ଅଷ୍ଟକମାଳା
ବୃହତ୍ ରୁଦ୍ରାଭିଷେକ
ଶୁକ୍ଳଯଜୁର୍ବେଦୀୟ ମନ୍ତ୍ର ରତ୍ନାକର
ପ୍ରେତକୃତ୍ୟ ପଦ୍ଧତିଃ
ରୁଦ୍ରଚଣ୍ଡୀ
କର୍ମକର୍ମାଣି
ପଣ୍ଡିତ ସର୍ବସ୍ୱ
ଅସବର୍ଣ୍ଣ ବିବାହ ପଦ୍ଧତି
ନିତ୍ୟକର୍ମ ପଦ୍ଧତି
ବିବାହ ପଦ୍ଧତି
ସର୍ବଦେବାଦେବୀ ପୂଜା ପଦ୍ଧତି
ରୁଦ୍ରାଭିଷେକ (ବଡ଼)
ରୁଦ୍ରାଭିଷେକ (ସାନ)
ନବଗ୍ରହ ପୂଜା ପଦ୍ଧତି
ଦଶମହାବିଦ୍ୟା
ଅଦ୍ଭୁତ ଗୁପ୍ତବିଦ୍ୟା
ଗୟାଶ୍ରାଦ୍ଧ
ପୟାଶ୍ରାଦ୍ଧ
ଶ୍ରାଦ୍ଧ ପଦ୍ଧତି
ସଂକ୍ରାନ୍ତି ହୋମ
ନବଗ୍ରହମ୍ ହୋମ
ଲକ୍ଷ୍ମୀପୂଜା ପଦ୍ଧତି
ଗର୍ଭାଧାନ ଓ ବନ୍ଦାପନା ପଦ୍ଧତି
ପଞ୍ଚଦେବତା ପୂଜା ବନ୍ଦନା ଓ
ନାରାୟଣ ଜନ୍ମ ପାଲା
ବିଶ୍ୱକର୍ମା ପୂଜା ପଦ୍ଧତି
ଗଣେଶ ପୂଜା ପଦ୍ଧତି
ସରସ୍ୱତୀ ପୂଜା ପଦ୍ଧତି
ଶିବପୂଜା ପଦ୍ଧତି
ଆନନ୍ଦ ଲହରୀ ସ୍ତୋତ୍ର (ବଡ଼)
ଆନନ୍ଦ ଲହରୀ ସ୍ତୋତ୍ର (ସାନ)
ନବଗ୍ରହ ସ୍ତୋତ୍ର ବିଧାନ (ପକେଟ୍)
ସ୍ତବ ସ୍ତୋତ୍ର ରତ୍ନାବଳୀ
ନବଗ୍ରହ ସ୍ତୋତ୍ର
ଶାରଳା ସ୍ତବ ରତ୍ନାବଳୀ
ଅପରାଜିତା ସ୍ତୋତ୍ର
ରୁଦ୍ରାଅଷ୍ଟାଧ୍ୟାୟୀ